ଷା ସନ୍ଦେଶ-୨

ଆଲେକ୍ଜାଣ୍ଡର୍ ରସ୍କିନ୍

# ବାପା ଯେବେ ପିଲା ଥିଲେ



## ବାପା ଯେବେ ପିଲା ଥିଲେ .....

ମୂଳ ଲେଖା — *ଆଲେକ୍‌ଜାଣ୍ଡର୍ ରସ୍କିନ୍*
ଓଡିଆ ରୂପାନ୍ତର — ବିଜୟକୃଷ୍ଣ ପଟ୍ଟନାୟକ
ବିନୟକୃଷ୍ଣ ପଟ୍ଟନାୟକ
ପୁନଃ ଅଙ୍କନ — ଅସିତ ଦାସ୍
ପ୍ରକାଶକ — ମାନବିକ,
ତୋଟାସାହି, ମାଷ୍ଟରପଡା,
ଫୁଲବାଣୀ-୭୬୨୦୦୧
ଫୋନ୍ : (୦୬୮୪୨) ୫୩୨୬୬



ଅଙ୍ଗସଜ୍ଜା — ଓରିକନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର
ମୁଦ୍ରଣ — ପଦ୍ମା କମର୍ସିଆଲ୍, ଭୁବନେଶ୍ୱର
ସହଯୋଗ ରାଶି — ତିରିଶ ଟଙ୍କା ମାତ୍ର
ପ୍ରକାଶ କାଳ — ଗୁରୁଦିବସ, ୧୯୯୯

ମାନବିକ ... ଏକ ଶିକ୍ଷା ଓ ବିଜ୍ଞାନପ୍ରେମୀ ପରିବାର । ଏ ଦିଗରେ ଆଗ୍ରହୀ ପ୍ରତ୍ୟେ ବନ୍ଧୁ ଏହି ପରିବାରର ଜଣେ ସଭ୍ୟା/ସଭ୍ୟ ଅଟନ୍ତି । ଶିକ୍ଷାର୍ଥୀ, ଶିକ୍ଷକ ଓ ଅଭିଭାବ ମଧ୍ୟରେ ଏକ ସହଯୋଗୀ ସମ୍ପର୍କ ବଢ଼ାଇ ଶିକ୍ଷାର ଅସଲ ମର୍ମକୁ ଖୋଜାଇବା ଏହାର ବିଭିନ୍ନ ଉଦ୍ୟମ ଚାଲୁରହିଛି । ବିଜ୍ଞାନ, ଶିକ୍ଷା କର୍ମଶାଳା, ଶିବିର,ରଚନା ପୁସ୍ତକ ଓ ପତ୍ରିକା ପ୍ରକାଶନ ଆଦି ମାଧ୍ୟମରେ ସମାଜରେ ଏକ ସୃଜନଶୀଳ ଓ ବି ପ୍ରେମୀ ଦୃଷ୍ଟିକୋଣକୁ ବଢ଼ାଇବା ପାଇଁ ଏହା ଏକ ଦଳଗତ ପ୍ରୟାସ ।

● **When Daddy was a Little Boy** ● Original Engli - Alexander Ruskin ● Oriya Transcreation - Bijoy Krush Pattanayak, Binaya Krushna Pattanayak ● Publishe **Manavik** ● Publication Period - Teacher's Day, 199 ● Price - Rs. 30.00

# ବାପା ଯେବେ ପିଲା ଥିଲେ



ମୂଳ ଲେଖା — *ଆଲେକ୍‌ଜାଣ୍ଡର ରସ୍କିନ୍*

ଓଡିଆ ରୂପାନ୍ତର — ବିଜୟକୃଷ୍ଣ ପଟ୍ଟନାୟକ
ବିନୟକୃଷ୍ଣ ପଟ୍ଟନାୟକ

ଯୋଗାଯୋଗ ଠିକଣା — ମାନବିକ,
ତୋଟାସାହି, ମାଷ୍ଟରପଡା,
ଫୁଲବାଣୀ-୭୬୨୦୦୧
ଫୋନ୍ : (୦୬୮୪୨) ୫୩୨୬୬

# ସୂଚୀପତ୍ର



**ବାପା ଯେବେ ପିଲା ଥିଲେ ...**

## ବାପା ଯେବେ ସ୍କୁଲ ଗଲେ



## 'ମାନବିକ' ସୂଚନା

# ଏ ବହିଟି କାହିଁକି ?

ପ୍ରକୃତରେ ଏହି ବହିଟି ହେଉଛି ଅନେକଗୁଡିଏ ସତ ଘଟଣାର ବର୍ଣ୍ଣନା । ସବୁ ମା' ବାପାଙ୍କ ପରି ଜଣେ କୁନି ଝିଅର ବାପା ତା'କୁ ନିଜ ପିଲାଦିନର ବିଭିନ୍ନ ଘଟଣାଗୁଡିକୁ ଶୁଣାଇଛନ୍ତି । ଝିଅ ବି ଏହି କାହାଣୀଗୁଡିକୁ ଶୁଣିବାରେ ଯଥେଷ୍ଟ ଆନନ୍ଦ ପାଇଛି । ଏପରିକି ନିଜ କାନବିନ୍ଧାକୁ ବି ସେ ଭୁଲି ଯାଇଛି । ଏଥିରେ ପରୀ ରାଇଜରେ କଳ୍ପନା ନାହିଁ କି ଶିକାର କାହାଣୀର ଦୁଃସାହସିକତା ନାହିଁ । କିନ୍ତୁ ଏଥିରେ ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନ ରହିଛି ଯାହାକୁ ସମସ୍ତେ ଅନୁଭବ କରି ନପାରନ୍ତି । ତାହା ହେଉଛି ... ''ପିଲାଦିନର ନିଛକ ଅନୁଭୂତି !'' ଜଣେ ପିଲା ଦୁନିଆକୁ ନୂଆ ନୂଆରେ ସାମନା କଲାବେଳେ ସେ ଯେଉଁ ରକମର ପରସ୍ଥିତିକୁ ସାମନା କରିଥାଏ ତାହା ସେ ହିଁ ଜାଣେ । ବଡମାନେ, ବିଶେଷ କରି ଭାରତ ପରି ଦେଶର ପାକଳ ନ ହୋଇ ପାକଳ ଦେଖାଯାଉଥିବା ବୟସ୍କମାନେ, ପିଲାଙ୍କର ଏହି ସମୟ, ଜୀବନ ଓ ସ୍ୱପ୍ନକୁ ଗୁରୁତ୍ୱ ହିଁ ଦିଅନ୍ତି ନାହିଁ । ଅଧିକାଂଶ ବଡ ମଣିଷ ପିଲାମାନଙ୍କୁ ଛୁଆ, ନିକୁଛିଆ, ଅସହାୟ, ଦୁର୍ବଳ ଆଦି ରୂପରେ ହିଁ ଦେଖିଥାନ୍ତି । ସେମାନେ ଭାବନ୍ତି, ସେମାନଙ୍କ ହାତ ବା ଲାଙ୍ଗକୁ ଧରି ନ ଚାଲିଲେ, 'ପିଲାଗୁଡାକ' ତାଙ୍କ ପରି 'ମଣିଷ' (!!) ହୋଇପାରିବେ ନାହିଁ । ତେଣୁ ସେମାନେ ପିଲାଙ୍କୁ ନିଜର ବୋକାମୀ, ଅମାନବିକତା ଓ ହତାଶପୂର୍ଣ୍ଣ ବିଚାରଛାଞ୍ଚରେ ପକାଇ 'ବିକୃତ' କରି ଗଢିବାକୁ ଅଣ୍ଟା ଭିଡି ଲାଗି ପଡନ୍ତି । ଏହାର ପରିମାଣ କ'ଣ ତାହା ଆଜି ଆମ ଆଖି ଆଗରେ ଜଳଜଳ ହୋଇ ଦେଖାଯାଉଛି । ନିଜ ରୁଚି ଓ ବିଚାର ଅନୁସାରେ ଜିଉଁଥିବା ମଣିଷଟିଏ ଆଜି ଭାରତରେ ଏକ ବିରଳ ପ୍ରାଣୀ ପରି ମନେ ହେଉଛି ।

ପ୍ରତ୍ୟେକ ପିଲା ନିଜ ଢାଞ୍ଚାରେ ଜଣେ ବଳିଷ୍ଠ ମଣିଷ । ତାଙ୍କୁ 'ଚଳୁଆ' କରି ଦେଖିବାର ଆମ ବଡମାନଙ୍କର କୌଣସି ଅଧିକାର ବା ଯୋଗ୍ୟତା ହିଁ ନାହିଁ । ଆମ ସମସ୍ତଙ୍କୁ ଆମର ଦୃଷ୍ଟିକୋଣ ବଦଳାଇବାକୁ ହେବ । ପିଲାମାନଙ୍କୁ ଆମର ସାଥି ଓ ଭବିଷ୍ୟତ ରୂପେ ଦେଖି ସମ୍ମାନ ଓ ଆଦର କରି ଶିଖିବାକୁ ହେବ । ପିଲାଙ୍କୁ ଆମର କଳଙ୍କିତ 'ଛାଞ୍ଚ'ରେ ଚାପି ଦେବା ପରିବର୍ତ୍ତେ ସେମାନେ ଯେପରି ନିଜ ରଚି ଅନୁସାରେ ଫୁଲ ପରି ଫୁଟି ହସି ଉଠିବେ ଓ ମହକ ବିଛାଇଦେବେ ସେଥିପାଇଁ ଉପଯୁକ୍ତ ପରିବେଶ ରଚିବାକୁ ପଡିବ । ତା' ହେଲେ କାଲିର ସମାଜଟା ଆଜିପରିକା ହିଂସା, ଦ୍ୱେଷ, ପରଶ୍ରୀକାତରତାରେ ଭରି ହୋଇପାରିବ ନାହିଁ । କାଲିଟାକୁ ସେମାନେ ଆଦର, ପ୍ରେମ, ଶାନ୍ତି ଓ ସୃଜନଶୀଳତାରେ ଭରି ଦେବେ ।

ଏହି ସ୍ୱର୍ଗର ଚାବିକାଠିଟିକୁ ଆମେ ବଡମାନେ ଆଉ ଲୁଚେଇ ଛପେଇ ରଖି ପାରିବା ନାହିଁ । ଆଜି ଏହାକୁ ଆମେ ତାଙ୍କରି ହାତରେ ସ୍ନେହର ସହ ଧରାଇ ନଦେଲେ କାଲି ସେମାନେ ଆମ ହାତରୁ ଛଡାଇ ନେବେ । ପୃଥିବୀରେ ସ୍ୱର୍ଗ ରଚନା ପାଇଁ ବାଟ ଖୋଲିବ ହିଁ ଖୋଲିବ । ଏପରି ରହିଲେ କାଲି ଆମ ନାଁ ସବୁ ସେମାନଙ୍କୁ ଭଲ ଲାଗିବ ନାହିଁ । ତେଣୁ ବେଳହୁଁ ସାବଧାନ ରହିବା...

ଏହି ବହିଟି ମାଧ୍ୟମରେ ଲେଖକ ଏହି ଭାବଟିକୁ ହିଁ ଗୁରୁତ୍ୱ ଦେଇଛନ୍ତି । ନିଜ ଛୁଆଟି ଯେପରି ଜଣେ 'ସୁସ୍ଥ', ବିଚାରଶୀଳ, ସାଥିପ୍ରେମୀ ଓ ମାନବିକ ମଣିଷଟିଏ ହୋଇ ଠିଆ ହେବ, ସେଥିପାଇଁ ସେ ନିଜ ଜୀବନର ଅନୁଭୂତି ପେଟିକୁ ତା'ରି ଆଗରେ ଖୋଲି ଦେଇଛନ୍ତି । ନିଜର ପ୍ରତିଟି ଅନୁଭୂତି ଓ ପରୀକ୍ଷାର ଫଳାଫଳକୁ ସେ ସଫା କରି ସୂଚାଇ ଦେଇଛନ୍ତି । ଏଥିରୁ ପିଲାଟିଏ ତା' ଜୀବନର ସହସ୍ର ପରୀକ୍ଷାକୁ ସାମନା କରିବା ପାଇଁ ବାଟ ସବୁ ପାଇ ଯାଇପାରିବ । କେଉଁଠାରେ ବି ଦ୍ୱନ୍ଦର ଶିକାର ହୋଇ ସେ ବାଟହୁଡା ହେବ ନାହିଁ । ସେ ସୁସ୍ଥ ଗଛଟିଏ ପରି ବଢି ଉଠିବା ପାଇଁ ବାପାଙ୍କର ଏହା ଏକ ଯତ୍ନଭରା ଉପହାର ।

ବ୍ୟକ୍ତିଗତ ଜୀବନରେ ଏହି ବହିଟିକୁ ପଢିବାରେ ଆମେ 'ମାନବିକ' ସାଥିମାନେ ଯଥେଷ୍ଟ ଆନନ୍ଦ ପାଇଛୁ । ବହିଟି ମାଧ୍ୟମରେ ଶିକ୍ଷା ସମ୍ପର୍କରେ ଆମେ ବେଶ୍ ଧାରଣା ବି ପାଇଛୁ । ଶିକ୍ଷା ଓ ବିଜ୍ଞାନର ପ୍ରସାର ଦିଗରେ ଗତି ଦଶନ୍ଧି ସାରା ଆମେ ଚଳାଇଥିବା ବିଭିନ୍ନ ପରଖ ସମୟରେ ଆମେ ଅନେକ ଶିକ୍ଷାର୍ଥୀ, ଶିକ୍ଷକ ଓ ଅଭିଭାବକଙ୍କ ସଂସ୍ପର୍ଶରେ ଆସିଛୁ । ଏହି କାହାଣୀସବୁକୁ ଅନେକ ଜାଗାରେ ଆଲୋଚନା କରିଛୁ, ଯୁକ୍ତି ବି ହୋଇଛି । ଏଥିରୁ ସବୁଠୁ ବେଶୀ ଆନନ୍ଦ ପାଇଛନ୍ତି ସବୁ ଜାଗାର, ସବୁ ବୟସର ପିଲାମାନେ । ଶିକ୍ଷକ ଓ ଅଭିଭାବକଙ୍କ ମଧ୍ୟରେ କମ୍ ସଂଖ୍ୟକ ବ୍ୟକ୍ତିବିଶେଷ ବହିଟିର ଅସଲ ମର୍ମକୁ ଆଦର କରିଛନ୍ତି । ପିଲାଙ୍କୁ ପ୍ରକୃତରେ ଭଲ ପାଉଥିବା ଓ ନିଜର ପିଲାଦିନକୁ ଉପଭୋଗ କରିଥିବା ବ୍ୟକ୍ତିମାନେ ହିଁ ଏହାର ଲାଭ ପାଇଛନ୍ତି । ବିଭିନ୍ନ ସମୟରେ ଆଲୋଚନା ମାଧ୍ୟମରେ ଆମ ବୁଝାମଣା ଓ କାମ ଯୋଜନା ବି ଅଧିକ ଫଳପ୍ରଦ ହୋଇପାରିଛି । ଏହି ବହିଟିର ମର୍ମକୁ ଖେଳାଇବା ଓ ପିଲାଙ୍କ ପାଇଁ ଓକିଲାତି କରିବା ଉଦ୍ୟମକୁ ଆମେ ଜାରି ରଖିଥିବୁ ।

ଆଶା ଓ ଅନୁରୋଧ, ଆପଣ ବି ଆମର ଏହି ଉଦ୍ୟମରେ ହାତ ମିଳାଇବେ ଓ ଅଧିକା ସାଥିଙ୍କ ପାଖରେ *ଶିକ୍ଷାର ମର୍ମ*କୁ ପହଞ୍ଚାଇବାରେ ଜଣେ ଅଗ୍ରଦୂତ ହେବେ ।

ଶିକ୍ଷା ସନ୍ଦେଶ ସହ,

ମାନବିକ ପରିବାର ।

# ଲେଖକଙ୍କ କଲମରୁ.....

ମୁଁ ଏହି ବହିଟି କାହିଁକି ଲେଖିଲି ତାହା ତୁମକୁ କହୁଛି । ମୋର ଝିଅଟିଏ ଅଛି । ତା'ର ନାଁ ସାଶା । ସେ ଏବେ ବଡ଼ ହେଲାଣି । ଆଜିକାଲି ନିଜ ବିଷୟରେ କିଛି କହିବା ବେଳେ କଥା କଥାକେ ସେ କହିଉଠେ "ଯେବେ ମୁଁ ଛୋଟ ଥିଲି....." ପିଲାବେଳେ ସାଶାର ଦେହ ବହୁତ ସମୟରେ ଖରାପ ରହୁଥିଲା । କେବେ ଜ୍ୱର ତ କେବେ ତଣ୍ଟି ବିନ୍ଧା ; କେବେ କେବେ କାନଟଣା । କାନଟଣା ଯେ କେତେ କଷ୍ଟ, ତାହା ତୁମେ ନିଜେ ଭୋଗିଥିଲେ ହିଁ ଜାଣିବ । ତୁମ କାନ ଯଦି କେବେ ଦରଜ ହୋଇନି, ତେବେ ଏହା କହିବା ତୁମ ପାଇଁ ମୂଲ୍ୟହୀନ । କାରଣ ତୁମେ ତାହା ବୁଝି ପାରିବନି ।

ଥରେ ସାଶାର କାନ ଏତେ ଜୋର୍‌ରେ ଟାଣିଲା ଯେ ସାରା ଦିନ,ସାରା ରାତି ସେ ଖାଲି କାନ୍ଦିଲା । ଟିକିଏ ବି ଶୋଇ ପାରିଲା ନାହିଁ । ତା'ର ସେ କଷ୍ଟ ଦେଖି ଦୁଃଖରେ ମୁଁ ବି କାନ୍ଦ କାନ୍ଦ ହୋଇ ଯାଇଥିଲି । ଏଥିପାଇଁ ମୁଁ ତାକୁ ବହି ପଢ଼ି ଶୁଣାଇଥିଲି ଓ କେତେକ ମଜାଳିଆ ଗପ କହିଥିଲି । ମୁଁ ଯେବେ ଛୋଟ ଥିଲି, କିପରି ନିଜ ନୂଆ ବଲଟିକୁ ମୋଟର ଗାଡି ତଳକୁ ଫିଙ୍ଗି ଦେଇଥିଲି .... ସେହି ଗପ କହିଥିଲି । ଏଇ ଗପଟି ସାଶାକୁ ବହୁତ ଭଲ ଲାଗିଥିଲା । ତାକୁ ଏହା ଜାଣି ଆଶ୍ଚର୍ଯ୍ୟ ଲାଗୁଥିଲା ଯେ, ତା' ବାପା ପୁଣି କେବେ ଛୋଟପିଲା ଥିଲେ, ସେ ଦୁଷ୍ଟ ହେଉଥିଲେ ଓ ମାଡ ଖାଉଥିଲେ । ସେ ଏଇ ଗପଟି ମନେ ରଖିଥିଲା । ଆଉଥରେ ଯେବେ ବି ତା' କାନ ଟାଣୁଥିଲା, ସେ ପାଟିକରି କହି ଉଠୁଥିଲା, "ବାପା, ବାପା ! ମୋ କାନ ଟାଣୁଛି ! ମୋତେ ତୁମ ପିଲାଦିନର ଗପଟିଏ କୁହ ।" ସବୁଥର ମୁଁ ତାକୁ ଗପଟିଏ କହୁଥିଲି । ଏଇ ବହିଟିରେ ତୁମେ ସେହି କାହାଣୀ ସବୁ ପାଇବ । ମୋ ଜୀବନରେ ଘଟିଥିବା ସବୁ ମଜାଳିଆ

ଘଟଣାକୁ ମୁଁ ମନେ ପକାଇବାକୁ ଚେଷ୍ଟା କରିଛି । କାରଣ ମୁଁ ଜଣେ ରୋଗିଣା ଶିଶୁକୁ ହସାଇବାକୁ ଚାହୁଁଥିଲି । ଏହାଛଡା ଏଇ ଗପ ଶୁଣାଇବାକୁ ଯାଇ ମୁଁ ମୋ ଝିଅକୁ ଲାଳୁଆ, ଚିଡ୍‌ଖୋର ଓ ଦୁଷ୍ଟ ନ ହେବା ପାଇଁ ଶିକ୍ଷା ଦେଉଥିଲି । ତା' ଅର୍ଥ ନୁହେଁ, ମୁଁ ସବୁବେଳେ ଏମିତି ଥିଲି । ଯେତେବେଳେ ମୁଁ କିଛି ଗପ ମନେ ପକାଇ ପାରୁ ନଥିଲି, ସେତେବେଳେ ମୋ ଜଣାଶୁଣା ବାପାମାନଙ୍କ ଜୀବନର ଘଟଣା କହୁଥିଲି । କାରଣ, ସବୁ ବାପା ତ କେବେ ନା କେବେ ଛୁଆ ହିଁ ଥିଲେ । ତେଣୁ ଏଇ ବହିରେ ସେମିତି କିଛି ମନଗଢା କାହାଣୀ ନାହିଁ । ସବୁ କିଛି ଛୋଟ ପିଲାଙ୍କ ସହ ଘଟିଥିବା ଘଟଣା ।

ଏବେ ସାଶା ବଡ଼ ହେଲାଣି । କେବେ ଦେହ ଖରାପ ହେଲେ, ସେ ନିଜେ ବଡ଼ ବଡ଼ ବହି ପଢିଥାଏ । ତେବେ ମୁଁ ଭାବୁଛି, ଅନ୍ୟ ପିଲା ନିଶ୍ଚୟ ଜାଣିବାକୁ ଚାହୁଁଥିବେ କି ତାଙ୍କ ବାପା ଯେବେ ପିଲା ଥିଲେ, ସେତେବେଳେ କ'ଣ କ'ଣ ହୋଇଥିଲା ।

ବାସ୍, ମୋର ଲକ୍ଷ୍ୟ ଏତିକି । କିନ୍ତୁ ଆଉ ଏକ କଥା ବି ଅଛି । ଏଇ ବହିରେ ଆଉ କିଛି ବି ଯୋଡା ଯାଇପାରେ । ତୁମ ଭିତରୁ ଯିଏ ଚାହିଁବ ବାକି କଥା ନିଜେ ପାଇ ପାରିବ । କାହିଁକି ନା' ତୁମ ବାପା ବି ତୁମକୁ ସେ ଦିନର କଥା କହି ପାରିବେ, ଯେବେ ସେ ନିଜେ ପିଲା ଥିଲେ । ଏ ପ୍ରକାରେ ତୁମ ମା' ମଧ ବତାଇ ପାରିବେ । ମୁଁ ବି ସେମାନଙ୍କ କାହାଣୀ ଶୁଣିବାକୁ ପସନ୍ଦ କରିବି ।

ତୁମ ପାଇଁ ଶୁଭକାମନା ସହ,

ତୁମର ସାଥି,

**ଆଲେକ୍‌ଜାଣ୍ଡର୍ ରସ୍କିନ୍**



# ଗାଡି ତଳେ ବାପାଙ୍କ ବଲ୍

ପିଲା ଥିଲାବେଳେ ବାପା ଗୋଟିଏ ସହରରେ ରହୁଥିଲେ । ଥରେ ଘରେ ତାଙ୍କ ପାଇଁ ଗୋଟିଏ ସୁନ୍ଦର ନୂଆ ବଲ୍ ଆଣିଦେଲେ । ବଲ୍‌ଟି ସୂର୍ଯ୍ୟ ପରି ସୁନ୍ଦର ହୋଇଥିଲା । ନା, ନା ତା'ଠୁ ବି ଅଧିକ ସୁନ୍ଦର । ଯେ କେହି ବି ଏହାକୁ ଏକ ଲୟରେ ଚାହିଁ ରହିବ । ଏହା ସୂର୍ଯ୍ୟଠୁ ବି ଚାରିଗୁଣ ଅଧିକ ସୁନ୍ଦର ଥିଲା, କାରଣ ବଲ୍‌ଟିରେ ଚାରିଟି ଅଲଗା ଅଲଗା ରଙ୍ଗ ଥିଲା ।

ସୂର୍ଯ୍ୟର ତ ଗୋଟିଏ ରଙ୍ଗ, ଆଉ ତା ମଧ୍ୟ କେଉଁ ରଙ୍ଗ କହିହେବନି । କିନ୍ତୁ ବଲ୍‌ର ଗୋଟିଏ ପାଖ ମିଠାଇର ରଙ୍ଗ ପରି ଗୋଲାପୀ ଥିଲା ତ, ଆରପାଖ ଚକୋଲେଟ୍ ପରି ଥିଲା । ତା'ର ଉପର ପାଖଟି ଆକାଶ ପରି

ନୀଳ ଓ ତଳ ପାଖଟି ଘାସ ପରି ଶାଗୁଆ ଥିଲା । ସେହି ସହରରେ ଏମିତି ସୁନ୍ଦର ବଲ୍ କେହି କେବେ ଦେଖି ନ ଥିଲେ । ଏହାକୁ ମସ୍କୋରୁ କିଣା ଯାଇଥିଲା । ମୁଁ ଭାବୁଛି, ମସ୍କୋରେ ବି ସେ ପ୍ରକାରର ବଲ୍ ବେଶୀ ନଥିଲା । ବଡ଼ ବଡ଼ ଲୋକ ମଧ୍ୟ ସେଇ ବଲ୍‌ଟିକୁ ଦେଖିବାକୁ ବାପାଙ୍କ ପାଖକୁ ଆସୁଥିଲେ ।

"ଆରେ ବାଃ, କେଡେ ସୁନ୍ଦର ବଲ୍ " ସମସ୍ତେ କହୁଥିଲେ । ବଲ୍‌ଟି ସତରେ ଭାରି ସୁନ୍ଦର ଥିଲା । ବାପା ସେଇ ବଲ୍‌ଟି ପାଇଁ ଗର୍ବ କରୁଥିଲେ । ବାହାରକୁ ବାହାରିଲେ ସେ ବଲ୍‌ଟି ଧରି ଏମିତି ଚାଲୁଥିଲେ ସତେ ଯେମିତି ସେ ନିଜେ ହିଁ ବଲ୍‌ଟିକୁ ତିଆରି କରିଛନ୍ତି ଓ ଏଥିରେ ଚାରିଟାଯାକ ରଙ୍ଗ ବି ଦେଇଛନ୍ତି । ବାପା ବଲ୍‌ଟି ନେଇ ଖେଳିବାକୁ ଯିବା ମାତ୍ରେ ଚାରିଆଡୁ ଅନ୍ୟ ପିଲାମାନେ ଦଉଡି ଆସୁଥିଲେ ।

"ବଲ୍‌ଟି ଟିକେ ଦେଖା ନା !" ସେମାନେ କହୁଥିଲେ "ଏଥିରେ ଆମେ ବି ଟିକେ ଖେଳିବୁ ?"

କିନ୍ତୁ ବାପା ବଲ୍‌ଟିକୁ ଜାବୁଡି ଧରି କହୁଥିଲେ, "ନା, ମୁଁ ଦେବିନି ! ଏଇଟା ମୋ ବଲ୍ !. ଏମିତି ବଲ୍ କାହାର ଅଛି ? ଏହା ମସ୍କୋରୁ କିଣା ଯାଇଛି ! ଯାଅ, ଯାଅ, ତୁମେ ସବୁ ଏଠାରୁ ପଳାଅ ! ମୋ ବଲ୍‌ରେ କେହି ହାତ ଲଗାଇବନି !"

ଏହା ଶୁଣି ପିଲାଏ କହୁଥିଲେ : "ତୁ ଏକଦମ୍ ଲୋଭୀ !"

କିନ୍ତୁ ସେମାନଙ୍କର ଏ କଥାକୁ ବାପା ଖାତିର କରୁ ନଥିଲେ । ତାଙ୍କର ସୁନ୍ଦର ବଲ୍‌ଟିକୁ ସେ ପିଲାଙ୍କୁ ଜମା ଖେଳିବାକୁ ଦେଉ ନଥିଲେ । ଏକା ଏକା ହିଁ ବଲ୍‌ଟିକୁ ନେଇ ଖେଳୁଥିଲେ । ଏପରି ଏକା ଖେଳିବାରେ ଜମା ମଜା ନ ଥିଲା । ସେଥିପାଇଁ ବାପା ଅନ୍ୟ ପିଲାଙ୍କ ପାଖରେ ପହଞ୍ଚି ଏକା ଏକା ଖେଳୁଥିଲେ । କେବଳ ତାଙ୍କୁ ଅଧିକ ଚିଡାଇବା ପାଇଁ ।

ଏଥିପାଇଁ ପିଲାମାନେ କହୁଥିଲେ : "ଇଏ ଲୋଭୀ । ଆମେ ତା ସାଙ୍ଗରେ ଖେଳିବାନି !" ଦୁଇଦିନ ଯାଏଁ ସେମାନେ ବାପାଙ୍କ ସହ ଖେଳିଲେ ନାହିଁ । ତୃତୀୟ ଦିନ ସେମାନେ କହିଲେ :

"ତୋ ବଲ୍‌ଟି ପ୍ରକୃତରେ ଖରାପ ନୁହଁ । ଏହା ଦେଖିବାକୁ ବଡ଼ ଓ ରଙ୍ଗ ବି ଏହାର ଭଲ । ହେଲେ, ମଟର ଗାଡି ତଳକୁ ପକାଇଦେଲେ ଅନ୍ୟ ବଲ୍ ପରି ଇଏ ବି ଫାଟି ଯିବ । ଏଣୁ ଏଥିପାଇଁ ଏତେ ଜିଦ୍ କରିବାରେ କିଛି ନାହିଁ ।

"ମୋ ବଲ୍ କେବେ ବି ଫାଟିବନି ।" ବାପା ଗର୍ବରେ କହିଲେ । ସେ ଏତେ ରାଗି ଯାଇଥିଲେ ଯେ ନିଜେ ଚାରି ରଙ୍ଗରେ ରଙ୍ଗେଇହୋଇଥିଲା ଭଳି ଦିଶୁଥିଲେ ।

"ହାଃ-ହାଃ, ଫାଟିଯିବ !" ପିଲାଏ ଚିଡାଇ କହିଲେ ।

"ନା-ଫାଟିବନି !"

"ଦେଖି, ହେଇ ମଟର ଗାଡି ଆସିଲାଣି, " ପିଲାମାନେ କହିଲେ । "ଫିଙ୍ଗିଲୁ ଦେଖି । ଡର ଲାଗୁଛି ନା ?"

ବାପା ବଲ୍‌ଟିକୁ ମଟର ଗାଡି ତଳକୁ ଫିଙ୍ଗିଦେଲେ । କିଛି ସମୟ ପାଇଁ ସମସ୍ତେ ଚୁପ୍ ହୋଇ ଠିଆ ହୋଇରହିଲେ । ବଲ୍‌ଟି ଗାଡିରେ ଆଗଚକ ଦୁଇଟିର ମଝିଦେଇ ଗଡିଗଲା ଓ ଡାହାଣପାଖ ପଛଚକ ପାଖରେ ପହଞ୍ଚିଗଲା । ମଟର ଗାଡିଟି ଗୋଟିଏ ଝଟ୍‌କାରେ ବଲ୍ ଉପରେ ଚଢି ଆଗକୁ ଚାଲିଗଲା । କିନ୍ତୁ ବଲ୍‌ଟି ସେଇଠି ହିଁ ପଡି ରହିଥିଲା ।

" ଫାଟିଲାନି ! ଫାଟିଲାନି ! " ବଲ ଆଣିବା ପାଇଁ ଦଉଡୁ ଦଉଡୁ ବାପା ଖୁସିରେ ଚିତ୍କାର କଲେ । ଏ ସମୟରେ ଜୋର୍‌ରେ ଶବ୍ଦ ଶୁଭିଲା - " ଢ଼ୋ..ଓ...! " ମନେହେଲା ସତେ ଯେମିତି ତୋପଟିଏ ଫୁଟିଲା । ଏହା ଥିଲା ବଲ୍‌ଟି ଫାଟିବାର ଶବ୍ଦ । ବଲ୍‌ଟି ଫାଟିଗଲା । ବାପା ବ୍ୟସ୍ତ ହୋଇ

ଯେଉଁଠି ତାହା ପଡିଥିଲା, ସେଇଠି ପହଞ୍ଚିଲେ । ସେ ଦେଖିଲେ ଗୋଟିଏ ଛିଣ୍ଡା ମଇଳା ରବର ଖଣ୍ଡ ହିଁ ପଡିଛି । ଏହା ଟିକିଏ ବି ସୁନ୍ଦର ନଥିଲା । ଏଥର ବାପା କାନ୍ଦିବାକୁ ଲାଗିଲେ । ସେ କାନ୍ଦି କାନ୍ଦି ଘର ମୁହାଁ ଧାଇଁଲେ । ପିଲାମାନେ ପଛରୁ ଜୋର୍‌ରେ ହସୁଥିଲେ ।

" ଫାଟିଗଲା ! ଫାଟିଗଲା ! " ସେମାନେ ପାଟି କରି ଚିଡାଉଥିଲେ । " ତୋତେ ବଢିଆ ଶିକ୍ଷା ମିଳିଲା !"

ବାପା ଘରକୁ ଆସି ନିଜ ସୁନ୍ଦର ନୂଆ ବଲ୍‌ଟି ଗାଡି ତଳକୁ ଫିଙ୍ଗିବା କଥା କହିଲେ । ଏହାଶୁଣି ଜେଜେମା' ରାଗରେ ବାପାଙ୍କୁ ଓଲଟା ଖୁବ୍ ପିଟିଲେ । ସନ୍ଧ୍ୟାରେ ଜେଜେ ଘରକୁ ଫେରି ବଲ୍ କଥା ଶୁଣିବାପରେ ସେ ବି ବାପାଙ୍କୁ ପିଟିଲେ ।

ପିଟୁ ପିଟୁ ଜେଜେ କହିଲେ :

"ମୁଁ ତୋତେ ବଲ୍ ପାଇଁ ନୁହେଁ, ତୋର ବୋକାମୀ ପାଇଁ ପିଟୁଛି ।"

ଏହି ଘଟଣାର ବହୁତ ଦିନ ପର୍ଯ୍ୟନ୍ତ ଲୋକଙ୍କ ଭିତରେ ଏ ବିଷୟରେ ଆଲୋଚନା ଚାଲିଥିଲା, 'ଏମିତି ସୁନ୍ଦର ବଲ୍‌ଟିକୁ ଗାଡି ତଳକୁ ସେ କେମିତି ଫିଙ୍ଗିଦେଲା ?

"ଜଣେ ବୋକା ପିଲା ହିଁ ଏମିତି କରିପାରେ ।" କିଏ ଜଣେ କହିଲେ । ବହୁତ ଦିନ ପର୍ଯ୍ୟନ୍ତ ପିଲାମାନେ ମଧ୍ୟ ବାପାଙ୍କୁ ଚିଡାଇ କହୁଥିଲେ :

"କାହିଁ, ତୋର ନୂଆ ବଲ୍ କେମିତି ଅଛି ?"

କେବଳ ବାପାଙ୍କ ଦାଦା ହିଁ ଥଟ୍ଟା କରି ନଥିଲେ । ଆରମ୍ଭରୁ ଶେଷ ଯାଏଁ ସବୁ କଥା ସେ ବାପାଙ୍କଠୁଁ ଶୁଣିଥିଲେ । ତା'ପରେ ସେ କହିଲେ :

"ନା ତୁ ବୋକା ନୋହୁଁ ।"

ବାପା ବହୁତ ଖୁସି ହେଲେ ।

"କିନ୍ତୁ ତୁ ଲୋଭୀ ଅଟୁ । ତୋତେ ଅନ୍ୟମାନଙ୍କୁ ଚିଡାଇବାକୁ ଭଲ

ଲାଗେ । '' ସେ କହିଲେ । ''ଏହା ବହୁତ ଖରାପ କଥା । ଯିଏ ବଲ୍‌ଟିଏ ପାଇଲେ, ଏକା ଏକା ଖେଳେ, ତାକୁ ଏପରି ଫଳ ମିଳିଥାଏ । ତୁ ଯଦି ତୋ'ର ଏହି ଅଭ୍ୟାସ ନ ବଦଳାଉ, ତେବେ ଜୀବନରେ ସବୁବେଳେ ଏପରି ଦୁଃଖ ପାଇବୁ ।''

ବାପା ବହୁତ ଡରିଗଲେ ଓ କାନ୍ଦିବାରେ ଲାଗିଲେ । ସେ କାନ୍ଦି କାନ୍ଦି କହିଲେ, ସେ ଲୋଭୀ କି ସ୍ୱାର୍ଥପର ହେବାକୁ ଚାହାନ୍ତି ନାହିଁ । ସେ ଅନେକ ସମୟ ଧରି ବଡ ପାଟିରେ କାନ୍ଦିବାରେ ଲାଗିଲେ । ଦାଦା ଏଥିରେ ତରଳିଗଲେ । ସେ ବାପାଙ୍କ ପାଇଁ ନୂଆ ବଲ୍‌ଟି କିଣି ଆଣିଲେ । ଏହା ଆଗ ବଲ୍‌ଟି ପରି ଏତେ ସୁନ୍ଦର ନ ଥିଲା । କିନ୍ତୁ ଏଥିରେ ସେ ସାହିର ସବୁ ପିଲାଙ୍କ ସହ ମିଶି ଖେଳିଲେ । ଏଥର ସମସ୍ତେ ଏହାର ମଜା ପାଇଲେ । ବାପାଙ୍କୁ କେହି ବି ଆଉ ଲୋଭୀ ବୋଲି କହିଲେ ନାହିଁ ।



# ବାପା କୁକୁରକୁ ଶିଖାଇଲେ

ପିଲା ଥିଲାବେଳେ ବାପା ଦିନେ ସର୍କସ ଦେଖିବାକୁ ଯାଇଥିଲେ । ସର୍କସ୍ ବହୁତ ମଜାଦାର ଥିଲା । ସର୍କସ୍‌ର ରିଂମାଷ୍ଟର୍ ତାଙ୍କୁ ସବୁଠୁଁ ଭଲ ଲାଗିଥିଲା । ସେ ଏକ ସୁନ୍ଦର ପୋଷାକ ପିନ୍ଧିଥିଲା । ରିଂମାଷ୍ଟର୍ ଶବ୍ଦଟି ବାପାଙ୍କୁ ବଢିଆ ଲାଗୁଥିଲା । ଏହାଛଡା  ସିଂହ, ବାଘ ଆଦି ଭୟଙ୍କର ଜୀବ ବି ତା'କୁ ଡରୁଥିଲେ । ତା' ପାଖରେ ଚାବୁକ୍ ଓ ପିସ୍ତଲ ଥିଲା । କିନ୍ତୁ ସେ ଏଗୁଡିକୁ କେବେ ବ୍ୟବହାର କଲାପରି ମନେ ହେଉ ନଥିଲା ।

''ପଶୁମାନେ ମୋ ଆଖିକୁ ଡରନ୍ତି ।'' ସେ ମଞ୍ଚ ଉପରୁ ପାଟି କରି କହିଲା । ''ମୋର ସବୁଠୁଁ ବଡ ଅସ୍ତ୍ର ହେଉଛି ମୋ ଆଖି । କୌଣସି ଜଙ୍ଗଲୀ ପଶୁ ବି ମଣିଷର ଆଖିକୁ ଦେଖିବାକୁ ସାହାସ କରି ନଥାଏ ।''

ସତକୁ ସତ, ସେ ଚାହିଁ ଦେଲା କ୍ଷଣି ସିଂହଟା ଚୁପ୍‌ଚାପ୍ ଚଉକି ଉପରେ ବସି ପଡୁଥିଲା; ପେଡି ଉପରକୁ ଡେଇଁ ଉପରକୁ ଚଢି ଯାଉଥିଲା; ଆଉ ମଲା ପରି ପଡି ରହିବାର ଅଭିନୟ ବି କରୁଥିଲା । କାରଣ ସେ ମଣିଷର ଚାହାଣୀକୁ ଏଡି ପାରୁ ନଥିଲା ।

ଏହା ମଧ୍ୟରେ ବେଣ୍ଡ ବାଜା ଜୋର୍‌ରେ ବାଜି ଉଠିଲା । ସମସ୍ତେ ତାଳି ମାରିଲେ । ସମସ୍ତଙ୍କ ଆଖି ରିଂମାଷ୍ଟେର୍ ଉପରେ । ସେ ନିଜ ଛାତି ଉପରେ ହାତ ରଖି ଚାରି ପାଖକୁ ଘୂରି ଘୂରି ଦର୍ଶକଙ୍କୁ ଅଭିବାଦନ ଜଣାଇଲା । ଏସବୁ ବହୁତ ମନଛୁଆଁ ଥିଲା । ପିଲାବାପା ମନେ ମନେ ଠିକ୍ କଲେ, ବଡ ହେଲେ ସେ ଜଣେ ରିଂମାଷ୍ଟର୍ ହେବେ । ସେ ଭାବିଲେ, ଏମିତି ଏକ ଜୀବକୁ ଶିଖାଇବା ଆରମ୍ଭ କରିବେ, ଯିଏ ପୂରା ଜଙ୍ଗଲୀ ହୋଇ ନଥିବ । କିନ୍ତୁ ଯାହା ହେଲେ ବି, ବାପା ଏବେ ପିଲା ଥିଲେ । ସେ ଜାଣିଥିଲେ, ସିଂହ, ବାଘ ପରି ଜୀବଙ୍କୁ ନେଇ ଏପରି କରାଯାଇ ପାରିବ ନାହିଁ । ତେଣୁ ସେ ଠିକ୍ କଲେ, କୁକୁରକୁ ନେଇ ଶିଖାଇବା ଆରମ୍ଭ କରିବେ । ତା' ବି, ବଡ କୁକୁର ନୁହେଁ । କାରଣ ବଡ କୁକୁର ତ ଛୋଟ ସିଂହ ସହ ସମାନ କହିଲେ ଚଳେ । ତାଙ୍କର ଦରକାର ଥିଲା ଗୋଟିଏ ଛୋଟ କୁକୁର । ବେଶ୍ ଶୀଘ୍ର ତାଙ୍କୁ ନିଜ ମନ ପସନ୍ଦର କୁକୁରଟିଏ ମିଳିଗଲା ।

ତାଙ୍କ ସହରରେ ଛୋଟ ପାର୍କଟିଏ ଥିଲା । ଏବେ ସେଇଠି ଗୋଟିଏ ବଡ ପାର୍କ ଅଛି । କିନ୍ତୁ ଏହା ବହୁତ ଦିନ ତଳର କଥା । ଜେଜେମା' ବାପାଙ୍କୁ ନେଇ ପାର୍କରେ ବୁଲିବାକୁ ଯାଉଥିଲେ । ଦିନେ ବାପା ସେଠାରେ ଖେଳୁଥିଲେ । ଜେଜେମା' ବେଞ୍ଚ୍ ଉପରେ ବସି ପଢୁଥିଲେ । ପାଖ ବେଞ୍ଚରେ ଆଉ ଜଣେ

ମହିଳା ବି ବସି ପଢୁଥିଲେ । ସେ ଗୋଟିଏ ସୁନ୍ଦର ପୋଷାକ ପିନ୍ଧିଥିଲେ । ତାଙ୍କ ପାଖରେ କୁକୁରଟିଏ ଥିଲା । କୁକୁରଟି ବେଶ୍ ଛୋଟ ଥିଲା । ଏହା ଧଳା ରଙ୍ଗର ଥିଲା । ଆଖି ଦୁଇଟି ପୂରା କଳା ରଙ୍ଗର ଥିଲା । ତା'ର ଆଖିରେ ଛୁଆ ବାପାଙ୍କୁ ଚାହିଁ ସେ ଯେମିତି କହୁଥିଲା : "ଆଃ... ମୋର ଶିଖିବା ପାଇଁ କେତେ ଇଚ୍ଛା ! ଏ ପିଲା, ତୁ ମୋତେ ଶିଖାଇବୁ ନା ! ମଣିଷ ଆଖିର ଚାହାଣୀକୁ ମୁଁ ସହିପାରେ ନାହିଁ ।"

ଏଥର ପିଲାବାପା କୁକୁରକୁ ଶିଖାଇବା ପାଇଁ ତା' ଆଡକୁ ଚାଲିଲେ । ଛେଛେମା' ଓ କୁକୁରର ମାଲିକାଣୀ, ଦୁହେଁ ବହିପଢାରେ ମଜ୍ଜି ଯାଇଥିଲେ, ତେଣୁ ସେମାନେ କିଛି ବି ଦେଖି ନଥିଲେ । କୁକୁର ବେଞ୍ଚ୍ ତଳେ ଶୋଇଥିଲା । ସେ ତା'ର ରହସ୍ୟପୂର୍ଣ୍ଣ ଦୁଇ ଆଖିରେ ବାପାଙ୍କୁ ଦେଖୁଥିଲା । ବାପା ଧୀରେ ଧୀରେ ତା' ଆଡକୁ ଆଗଉଥିଲେ, ଆଉ ଭାବୁଥିଲେ : ମନେ ହେଉଛି – ଏହା ଉପରେ ମୋ ନଜରର କୌଣସି ପ୍ରଭାବ ପଡୁନି ... ଜଣାପଡୁଛି ସିଂହକୁ ନେଇ ହିଁ ମତେ ଆରମ୍ଭ କରିବାକୁ ପଡିବ ! ବୋଧହୁଏ ଇଏ ଆଉ ଶିଖିବାକୁ ଚାହୁଁ ନାହିଁ ।"

ସେ ଦିନ ବେଶ୍ ଗରମ ଲାଗୁଥିଲା । ବାପା ହାଫ୍ ପେଣ୍ଟ ଓ ଛୋଟା ପିନ୍ଧିଥିଲେ । ସେ କୁକୁରର ଆହୁରି ପାଖକୁ ଚାଲିଥାନ୍ତି । କିନ୍ତୁ କୁକୁର ତାଙ୍କୁ ଦେଖି ବି ସେମିତି ପଡି ରହିଥିଲା । ବାପା ଯେତେବେଳେ ତା'ର ପୂରା ପାଖରେ ପହଞ୍ଚିଗଲେ, ହଠାତ୍ କୁକୁରଟା ତାଙ୍କ ଉପରକୁ କୁଦି ପଡିଲା ଓ ତାଙ୍କ ପେଟକୁ କାମୁଡି ଦେଲା । ସାଙ୍ଗେ ସାଙ୍ଗେ କୋଳାହଳ ଆରମ୍ଭ ହୋଇଗଲା । ବାପା ଚିତ୍କାର କରିବାରେ ଲାଗିଲେ । ଛେଛେମା' ବି ପାଟି କଲେ । କୁକୁରର ମାଲିକାଣୀ ବି ପାଟି କରି ଉଠିଲେ । କୁକୁର ଜୋର୍‌ରେ ଭୁକିବାରେ ଲାଗିଲା । ବାପା ଚିତ୍କାର କରୁଥିଲେ :

"ଉଁ ..... ଉଁ ! ସେ ମୋତେ କାମୁଡି ଦେଲା !"

ଢେଙ୍କେମା’ ପାଟି କରୁଥିଲେ :

‘‘ଆରେ ! ଏଇଟା ତା’କୁ କାମୁଡି ଦେଲା !’’

ଆଉ କୁକୁରର ମାଲିକାଣୀ ପାଟି କରୁଥିଲେ :

‘‘ଏ ପିଲା କୁକୁର ସାଙ୍ଗରେ ଲାଗିଥିଲା ! ମୋ କୁକୁର କେବେ କାହାକୁ କାମୁଡି ନଥିଲା !’’ ତେଣେ କୁକୁର ଖୁବ୍ ଜୋର୍‌ରେ ଭୁକି ଚାଲିଥାଏ । ଏଥିରୁ ତୁମେ ସେଠାକାର ପରିସ୍ଥିତିକୁ କଳ୍ପନା କରି ପାରୁଥିବ ।

ଚାରିଆଡୁ ଲୋକେ ଦଉଡି ଆସିଲେ । ସମସ୍ତେ କହୁଥିଲେ,

‘‘ଅତିରିକ୍ତ ଦୁଷ୍ଟାମୀର ଫଳ ଏଇଆ ।’’

ପାର୍କ୍ ଜଗୁଆଳୀ ପାଖକୁ ଆସି ପଚାରିଲା :

‘‘କିରେ ପିଲା, ତୁ କୁକୁରକୁ ଚିଡାଉ ଥିଲୁ ନା’ କ’ଣ ?’’

‘‘ନା, ନା,’’ ବାପା କହିଲେ । ‘‘ମୁଁ ତ ତା’କୁ ଶିଖାଉଥିଲି ।’’

ଏକଥା ଶୁଣି ସମସ୍ତେ ହସି ଉଠିଲେ ।

ଜଗୁଆଳୀ ପଚାରିଲା : ‘‘କେମିତି ?’’

‘‘ମୁଁ ତା’ ଆଖି ସହ ଆଖି ମିଳାଇ ତା’ ଆଡକୁ ଯାଉଥିଲି ।’’ ବାପା କହିଲେ, ‘‘ଏବେ ମୁଁ ଜାଣିଗଲି, ଇଏ ମଣିଷର ଚାହାଣୀକୁ ସହି ପାରୁନି ।’’

ସମସ୍ତେ ପୁଣି ହସିବାରେ ଲାଗିଲେ ।

‘‘ଦେଖିଲ !’’ କୁକୁରର ମାଲିକାଣୀ କହିଲେ ।’’ ଏଇ ପିଲାର ହିଁ ସବୁ ଦୋଷ । ମୋ କୁକୁରକୁ ଶିଖାଇବା ପାଇଁ ତା’କୁ କେହି କହି ନଥିଲେ । ଆଉ ଆପଣ,’’ ସେ ଢେଙ୍କେମା’ଙ୍କ ଆଡକୁ ଚାହିଁ କହିଲେ, ‘‘ନିଜ ପିଲାର ଦେଖାଚାହାଁ କରୁ ନଥିବାରୁ ଜୋରିମାନା ଦେବା ଉଚିତ୍ ।’’

ଢେଙ୍କେମା’ଙ୍କର ଶ୍ୱାସ ରୁନ୍ଧି ହୋଇଗଲା । ସେ ଏତେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ଯେ ତାଙ୍କ ପାଟିରୁ ପଦେ ବି କଥା ବାହାରିଲାନି । ଏ ସମୟରେ ପାର୍କ୍ ଜଗୁଆଳୀ କହିଲା :

''ଆପଣ ନୋଟିସ୍‌ଟିକୁ ଦେଖିଛନ୍ତି ? 'ଏଠାକୁ କୁକୁର ଆଣିବା ମନା ।' ଯଦି ଏଠାରେ ଲେଖାଥା'ନ୍ତା, 'ପିଲା ଆଣିବା ମନା,' ତା' ହେଲେ ମୁଁ ତାଙ୍କ (ଢେଙ୍କେମା') ଉପରେ ଜୋରିମାନା କରିଥାନ୍ତି । କିନ୍ତୁ ଏବେ ମୁଁ ଆପଣଙ୍କ ଉପରେ ଜୋରିମାନା ପକାଇବି । ଆଉ ମୁଁ ଆପଣଙ୍କୁ ପାର୍କ୍‌ରୁ ଚାଲିଯିବା ପାଇଁ କହିବି । ସବୁ ପିଲାଙ୍କ ପରି ଏଇ ପିଲାଟି ପାର୍କ୍‌ରେ ଖେଳୁଥିଲା । କିନ୍ତୁ ଆପଣଙ୍କ କୁକୁରଟି ତ କାମୁଡେ । ତେଣୁ ଆପଣ ଏଥିପ୍ରତି ସତର୍କ ରହିବା ଉଚିତ୍ ଥିଲା ।'' ତା'ପରେ ସେ ବାପାଙ୍କୁ ଚାହିଁ କହିଲା, ''ଏ ପିଲା, ଖେଳିବା ବେଳେ ତୋ'ର ମୁଣ୍ଡ ଖଟାଇବା ଦରକାର ଥିଲା । କୁକୁରକୁ ତ ଏହା ଜଣା ନଥିଲା, ତୁ ତା' ଆଡକୁ କାହିଁକି ଆସୁଅଛୁ । ଏପରି ବି ହୋଇପାରେ, ସେ ଭାବିଥିବ ଯେ ତୁ ତାକୁ କାମୁଡିବାକୁ ଆସୁଛୁ । ବୁଝିଲୁ ?''

''ହଁ,'' ବାପା କହିଲେ । ଏବେ ସେ ଆଉ ରିଂମାଷ୍ଟର୍ ହେବାକୁ ଚାହୁଁ ନଥିଲେ । ପୁଣି କୁକୁର କାମୁଡା ଯୋଗୁଁ ଯେଉଁ ଛୁଞ୍ଚିଫୋଡା (ଇଞ୍ଜେକ୍‌ସନ୍) କଷ୍ଟ ସହିବାକୁ ପଡିଲା - ଏହା ଦାଉରୁ ବଞ୍ଚିବା ପାଇଁ - ତାପରେ ସେ ଠିକ୍ କରି ନେଲେ ଯେ ଏପରି କାମରେ କିଛି ଲାଭ ବା ମଜା ନାହିଁ ।

ଏଥର ସେ ଭଲ ରୂପେ ବୁଝିଗଲେ କ'ଣ ପାଇଁ ପଶୁମାନେ ମଣିଷ ଆଖିର କଡା ଚାହାଣୀକୁ ସହି ପାରନ୍ତି ନାହିଁ । ପରେ ବାପାଙ୍କର ଆଉ ଜଣେ ପିଲା ସହ ଭେଟ ହେଲା । ସେ ବି ବାପାଙ୍କ ପରି ଏକ ଭୟଙ୍କର ବଡ କୁକୁରକୁ ନିଜ ଚାହାଣୀ ଦ୍ୱାରା ପ୍ରଭାବିତ କରିବାକୁ ଚେଷ୍ଟା କରିଥିଲା । ଆଲୋଚନା ବେଳେ ବାପା ଓ ସେ ପରସ୍ପରକୁ ସଅଳ ବୁଝିଗଲେ ।

କଥାଟିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ କୁକୁରଟି ଆର ପିଲାଟିର ପେଟକୁ ନ କାମୁଡି ତା'ର ଗାଲକୁ କାମୁଡି ଦେଇଥିଲା । କିନ୍ତୁ ତାକୁ ବି ବାପାଙ୍କ ପରି ପେଟର ନାଭି ଚାରିପଟେ ଛୁଞ୍ଚିଫୋଡା କଷ୍ଟ ସହିବାକୁ ପଡିଥିଲା



# ବାପା କବିତା ଲେଖିଲେ

ବାପା ଯେବେ ପିଲା ଥିଲେ, ବହିପଢାରେ ତାଙ୍କର ବେଶୀ ସଉକ ଥିଲା । ଚାରିବର୍ଷ ବୟସରେ ସେ ବହିପଢା ଶିଖିଯାଇଥିଲେ । ସେ ସମୟରେ ଭଲ ବହି ପାଇଲେ, ପୂରାଦିନ ସେ ପଢାରେ ବସି ଯାଉଥିଲେ । ଅନ୍ୟ ପିଲାମାନେ ଖେଳାଖେଳି କଲାବେଳେ, ବାପା କେବଳ ପଢାରେ ଲାଗି ରହୁଥିଲେ । ଜେଜେ ଓ ଜେଜେମା' ସେଥିପାଇଁ ଚିନ୍ତିତ ଥିଲେ । ସେମାନେ କହୁଥିଲେ, ଏତେ ପଢିବା ଭଲ ନୁହେଁ । ସେମାନେ ବାପାଙ୍କୁ ବହି ଦେବା ବନ୍ଦ କରିଦେଲେ ।

ଏଥର ସେମାନେ ତାଙ୍କୁ ଦିନରେ କେବଳ ତିନି ଘଣ୍ଟା ପଢିବାକୁ ଦେଉଥିଲେ । ହେଲେ, ଏଥିରେ କିଛି ଫାଇଦା ମିଳିଲାନି । ଛୋଟ ବାପା ତଥାପି ସକାଳୁ ରାତି ଯାଏଁ ପଢୁଥିଲେ । ପଢା ସମୟର ତିନି ଘଣ୍ଟା ସେ ସଭିଙ୍କ ସାମନାରେ ବସି ପଢୁଥିଲେ । ବାକି ସମୟରେ ସେ ଛାତ ଉପରେ ଲୁଚି ବସୁଥିଲେ ଓ ପଢୁଥିଲେ । ନଡା ରଖା ଯାଇଥିବା ଘରେ ସେ ଲୁଚି ପଢୁଥିଲେ । ଏଇ ଘରେ ପଢିବାକୁ ତାଙ୍କୁ ସବୁଠୁଁ ବେଶୀ ଭଲ ଲାଗୁଥିଲା । ଶୁଖିଲା ଘାସ, ନଡାରୁ ଏକ ମଧୁର ବାସନା ଆସୁଥିଲା । ସେ ସମୟରେ ଘରର ସବୁ ଖଟ ତଳେ ତାଙ୍କୁ ଖୋଜା ଯାଉଥିଲା ଓ ଉପରେ ଥାଇ ସେ ସମସ୍ତଙ୍କର ପାଟି ଶୁଣି ପାରୁଥିଲେ ।

ସନ୍ଧ୍ୟାରେ ଖାଇବାବେଳ ହେଲେ ବାପା ଘରକୁ ଆସୁଥିଲେ । ସଙ୍ଗେ ସଙ୍ଗେ ତାଙ୍କୁ ଦଣ୍ଡ ଦିଆଯାଉଥିଲା । ସେ ଶୀଘ୍ର ଖାଇବା ସାରିଦେଇ ଶୋଇବାକୁ ଚାଲି ଯାଉଥିଲେ । ଅଧରାତି ହେଲେସେ ଧୀରେ ଉଠି ବସୁଥିଲେ ଓ ବତୀ ଜଳେଇ ପଢାରେ ଲାଗି ଯାଉଥିଲେ । ସେ ଯେ କେତେ ବହି ପଢି ସାରିଥିଲେ, ତା'ର ହିସାବ ନାହିଁ - 'ଗଲିଭର ଭ୍ରମଣ କାହାଣୀ', ପୁସ୍କିନ୍‌ଙ୍କ 'ପରୀ କାହାଣୀ', 'ଅଲିଫ୍-ଲୈଲା', 'ରବିନସନ୍ କ୍ରୁଶୋ' ଇତ୍ୟାଦି ।

ଦୁନିଆରେ କେତେ ବଢିଆ ବହି ଅଛି ! ବାପା ସେସବୁକୁ ପଢିବାକୁ ଚାହୁଁଥିଲେ । ସମୟ ଶୀଘ୍ର ବିତି ଯାଉଥିଲା । ଏହି ସମୟରେ ଜେଜେମା' ଆସୁଥିଲେ । ତା'ଙ୍କ ବହି ନେଇ ଯାଉଥିଲେ ଓ ବତୀ ଲିଭାଇ ଚାଲି ଯାଉଥିଲେ । କିଛି ସମୟ ପରେ ବାପା ପୁଣି ଉଠୁଥିଲେ । ବତୀ ଜଳାଇ ଆଗପରି କିଛି ମଜାଳିଆ ବହି ନେଇ ପଢାରେ ବସି ଯାଉଥିଲେ । ସେତେବେଳେ ଜେଜେ ଆସି ଯାଉଥିଲେ । ସେ ବହି ଛଡାଇନେଇ ବତୀ ଲିଭାଉଥିଲେ ଓ ଅନ୍ଧାରରେ ତାଙ୍କୁ କଷି କରି ଚାପୁଡାଏ ମାରୁଥିଲେ ।

ହେଲେ, ବାପାଙ୍କୁ ଏ ମାଡ ଯେତେ ବାଟୁ ନଥିଲା, ତା'ଠୁ ଅଧିକ କଷ୍ଟ ମନରେ ହେଉଥିଲା ।

ଏ ସବୁର ବହୁତ ଖରାପ ଫଳ ହେଲା । ପ୍ରଥମ କଥା - ବାପାଙ୍କର ଆଖି ଖରାପ ହୋଇଗଲା- ଖଟ ତଳେ, ଛାତ କଡରେ, ନଡା ଘରେ ଆଲୁଅ ବହୁତ କମ୍ । ପୁଣି ସେ କମ୍ବଳ ଭିତରେ ଶୋଇରହି ମଧ ପଢିବାକୁ ଚେଷ୍ଟା କରୁଥିଲେ- ବାସ୍, କେବଳ ଆଲୁଅ ଆସିବା ପାଇଁ ସେଥିରେ ଛୋଟ କଣାଟିଏ ଥିଲା । ଶୋଇ ଶୋଇ ପୁଣି କମ୍ ଆଲୁଅରେ ପଢିବା ଆଖି ପାଇଁ ବହୁତ ଖରାପ । ଏଥିପାଇଁ ବାପାଙ୍କୁ ଚଷମା ପିନ୍ଧିବାକୁ ପଡିଥିଲା । ସେ ସମୟରେ ବାପା ଛୋଟ ଛୋଟ ପଦ ଯୋଡି କବିତା (ଢଗ) ସୃଷ୍ଟି କରୁଥିଲେ ।

ବିଲେଇଟିଏ ଦେଖିଲେ ସେ କହୁଥିଲେ :

*ପୁଷି ମାଉସୀ କୋଉଠି ଥାଉ,*
*ଡାକିଲେ ଥରେ ମିଆଁଉ କହୁ !*

କୁକୁରଟିଏ ଦେଖିଲେ ସେ କହୁଥିଲେ :

*ବଡ଼ ସାଙ୍ଗ ମୋର ଏଇ କୁକୁର,*
*ଖାଇବାକୁ ଦେବି ଗୋଟେ ପାହାର !*

କେବେ କୁକୁଡା ଦେଖିଲେ, କହୁଥିଲେ :

*ବଙ୍କା ତୋର ଚାଲି, ବଙ୍କା ତୋ ବେକ,*
*କହରେ କୁକୁଡା କକରେ ..... କକ !*

ଆଉ ଯେବେ ସିଏ ନିଜ ବାପାଙ୍କୁ ଦେଖୁଥିଲେ, ସେ କହୁଥିଲେ :

*ବାପା ତୁମେ କଲଣି ଲେଟ୍*
*ଆମକୁ ଦିଅ ଚକୋଲେଟ୍ !*

ଜେଜେ ଓ ଜେଜେମା' ଭାରି ଖୁସି ହୋଇ ବାପାଙ୍କର ଏହି ଛୋଟ କବିତାଗୁଡିକୁ ଶୁଣୁଥିଲେ । ସେମାନେ ସେଗୁଡିକୁ ଲେଖି ରଖୁଥିଲେ । ଘରକୁ

ଯେ କେହି ଆସିଲେ, ତାଙ୍କୁ ପଢି ଶୁଣାଉଥିଲେ । ଅତିଥିମାନେ ମଧ୍ଯ ସେଗୁଡିକୁ ଲେଖି ନେଉଥିଲେ । ଏଣିକି ଯେବେ ବି କେହି ଲୋକ ଆସୁଥିଲେ, ବାପାଙ୍କୁ କହୁଥିଲେ :

"ଆରେ ଭାଇ, କିଛି ନୂଆ କବିତା ଶୁଣାଅ !" ଆଉ ବାପା ଭାରି ଖୁସି ହୋଇ ନିଜର ନୂଆ କବିତା ଶୁଣାଉଥିଲେ । ସେ ସବୁ କବିତାକୁ ଏପରି ସାରୁଥିଲେ :

*ପୁଷି ବିରେଇର ରଙ୍ଗଟି କଳା,*
*କିଏ ତାକୁ ଭାଇ ପାଳିଛି ଭଲା ?*

ସବୁ ଲୋକ ଏହା ଶୁଣି ବହୁତ ହସୁଥିଲେ । ସେମାନେ ଜାଣିଥିଲେ, ଏପରି ସରଳ କବିତା କୌଣସି କାମର ନୁହେଁ । ଏହାକୁ ଯେ କେହି ବି ରଚି ପାରିବ । ମାତ୍ର ବାପା ଭାବୁଥିଲେ ଯେ, ତାଙ୍କ କବିତା ବହୁତ ବଢିଆ ହେଉଛି । ସେ ଭାବୁଥିଲେ, ଲୋକେ ଖୁସିରେ ହସ ରୋକି ପାରୁନାହାନ୍ତି ଓ ସେ ନିଜେ ଜଣେ ବଡ଼ କବି ହୋଇ ଯାଇଛନ୍ତି । ସବୁଥର ଜନ୍ମଦିନ ଉତ୍ସବରେ ସେ କବିତା ଶୁଣାଉଥିଲେ । ଲୀଜା ମାଉସୀଙ୍କ ବାହାଘରେ ବି ସେ କବିତା ଶୁଣାଇଲେ । ତେବେ ଏଥର ଏହା ସେତେ ଜମିଲା ନାହିଁ । କାରଣ, ଏହା ଏପରି ଆରମ୍ଭ ହୋଇଥିଲା :

*କିଏ ଭାବିଥିଲା ସତରେ କହ,*
*ଲୀଜା ମାଉସୀର ହେବ ବିବାହ !*

ସବୁ ଅତିଥି ଖୁବ୍ ହସିଲେ, ହେଲେ ଲୀଜା ମାଉସୀଙ୍କ ଆଖିରୁ ଲୁହ ଝରି ପଡିଲା । ସେ ନିଜ ବଖରାକୁ ଦଉଡି ଚାଲିଗଲେ । ଲୀଜା ମାଉସୀଙ୍କ ସ୍ୱାମୀ ବି ହସି ନଥିଲେ, ଅବଶ୍ୟ ସେ କାନ୍ଦି ବି ନଥିଲେ । ବାପାଙ୍କୁ କୌଣସି ଦଣ୍ଡ ମିଳି ନଥିଲା । କାରଣ ସେ ଲୀଜା ମାଉସୀଙ୍କୁ କନ୍ଦାଇବା ପାଇଁ ଏହା ଲେଖି ନଥିଲେ । ତେବେ ବାପା ଆଉ ଗୋଟିଏ କଥା ଜାଣିପାରିଲେ ଯେ,

ତାଙ୍କର କବିତା ଶୁଣି କିଛି ବୟସ୍କ ଲୋକ ଆଗଭଳି ହସୁନାହାନ୍ତି । ଏତିକିବେଳେ ଜଣେ ଆଉ ଜଣକୁ କହୁଥିବାର ସେ ଶୁଣିଲେ :

''ଏଇ ଅଦ୍ଭୁତ ପିଲା କ'ଣ କେବେ ନିଜର ଏହି ବକବକ ହେବା ଗୁଣ ବନ୍ଦ କରିବ ?'' ବାପା, ଜେଜେମା'ଙ୍କ ପାଖକୁ ଯାଇ ପଚାରିଲେ : '' ଅଦ୍ଭୁତ ପିଲା କାହାକୁ କୁହାଯାଏ ? ''

ଜେଜେମା' କହିଲେ : ''ଏମିତି ପିଲା, ଯିଏ ସାଧାରଣ ନୁହେଁ ।''

''ତା ଭିତରେ ଏପରି କ'ଣ ଥାଏ ଯେ, ସେ ସାଧାରଣ ନୁହେଁ ?''

''ଏପରି ପିଲା ବେହେଲା ବଜାଏ ବା ବହୁତ ଭଲ ଗଣିତ କରିପାରେ ସେ ନିଜ ମା'କୁ ଦୁନିଆଯାକର ଅଯଥା ପ୍ରଶ୍ନ ପଚାରି ବିରକ୍ତ କରେ ନାହିଁ ।''

''ଆଉ ଯେବେ ସେ ବଡ଼ ହୁଏ କ'ଣ ହୁଏ ?''

''ସେ ସମସ୍ତଙ୍କ ପରି ଜଣେ ସାଧାରଣ ଲୋକ ହିଁ ହୋଇଯାଏ ।''

''ଏଇ କଥା !'' ବାପା କହିଲେ, ''ଏବେ ମୁଁ ବୁଝିଗଲି ।''

ଏହା ପରେ ଜନ୍ମଦିନ ଉତ୍ସବରେ ସେ ଆଉ କବିତା ପଢି ନଥିଲେ । ତାଙ୍କୁ ଯଦି କିଏ କବିତା ପଢ଼ିବାକୁ କହୁଥିଲେ ସେ କହୁଥିଲେ ମୋର ମୁଣ୍ଡ ବିନ୍ଧୁଛି । ଏହାପରେ ବହୁତ ଦିନ ପର୍ଯ୍ୟନ୍ତ ସେ ଆଉ କବିତା ଲେଖି ବି ନ ଥିଲେ । ଆଜି ମଧ୍ୟ ଯଦି କୌଣସି ଜନ୍ମଦିନ ଉତ୍ସବରେ ତାଙ୍କୁ ନିଜ କବିତା ଶୁଣାଇବାକୁ କୁହାଯାଏ, ତାଙ୍କ ମୁଣ୍ଡ ବିନ୍ଧେ ।



# ବାପା ଡାକ୍ତରଙ୍କୁ କାମୁଡିଦେଲେ

ପିଲା ଥିଲାବେଳେ ବାପାଙ୍କୁ ଅନେକ ସମୟରେ ସର୍ଦ୍ଦି ହେଉଥିଲା । ସେ ଛିଙ୍କୁଥିଲେ ଓ କାଶୁଥିଲେ । କେବେ ତାଙ୍କର ତଣ୍ଟି କାଟୁଥିଲା ତ କେବେ କାନ ଟାଣୁଥିଲା । ଦିନେ ତାଙ୍କ ବାପା, ମା ତାଙ୍କୁ ଜଣେ ଡାକ୍ତରଙ୍କ ପାଖକୁ ନେଇଗଲେ । ଡାକ୍ତରଙ୍କ କ୍ଲିନିକ୍ ସାମନାରେ ବୋର୍ଡ଼୍‌ଟିଏ ଲାଗିଥିଲା । ସେଥିରେ ଲେଖାଥିଲା: ''କାନ, ନାକ ଓ ଗଳା ।''

''ଏହା କ'ଣ ଡାକ୍ତରବାବୁଙ୍କ ନାଁ ?'' ବାପା ପଚାରିଲେ ।

''ନା, ସେ ଦେହର ଯେଉଁ ସବୁ ଅଙ୍ଗର ଚିକିତ୍ସା କରନ୍ତି, ତା'ର ନାମ । ଆଚ୍ଛା, ତୁ ଏଥର ଟିକେ ଚୁପ୍ ରହ ତ !'' ଜେଜେ କହିଲେ ।

ଡାକ୍ତର ବାପାଙ୍କର କାନ, ନାକ ଓ ଗଳାକୁ ଭଲ ଭାବେ ପରୀକ୍ଷା କଲେ ଓ କହିଲେ ତାଙ୍କର ଅପରେସନ୍ ଦରକାର । ସେଥିପାଇଁ ବାପାଙ୍କୁ ମସ୍କୋ ନିଆଗଲା । ତାଙ୍କର ଘଣ୍ଟିକା ଫୁଲିଥିଲା ।

ଜଣେ ଅତିଶୟ ବୁଢା, ଅତ୍ୟନ୍ତ କଡା ଓ ପୂରା ଧଳା ବାଳୁଆ ଡାକ୍ତର ଆସି କହିଲେ :

''ତୁ ଆଁ କଲୁ ..... !'' ବାପା କଷ୍ଟେମଷ୍ଟେ ଆଁ କଲେ । କିନ୍ତୁ ବୁଢା ଡାକ୍ତର ଏଥିପାଇଁ ଧନ୍ୟବାଦଟିଏ ବି ଜଣାଇଲେ ନାହିଁ । ସେ ନିଜ ହାତକୁ ବାପାଙ୍କ ପାଟି ଭିତରେ ପୂରାଇ ଦେଲେ ଓ ଟଣାଭିଡା କରିବାରେ ଲାଗିଲେ । ଏହା ବାପାଙ୍କୁ ଖୁବ କାଟୁଥାଏ ଓ ଖରାପ ବି ଲାଗୁଥାଏ । କିଛି ସମୟ ଯାଞ୍ଚ କରିସାରି ଡାକ୍ତର କହିଲେ, 'ଓଃ ! ଏଇଠି ଅଛି !'' ଏଥର ସେ ପୂର୍ବଠାରୁ ଅଧିକ ଜୋର୍‌ରେ ଟାଣିଲେ । ବାପା ଆଉ ସମ୍ଭାଳି ପାରିଲେ ନାହିଁ ।

ଡାକ୍ତରବାବୁ ହଠାତ୍ ଚିତ୍କାର କରି ବାପାଙ୍କ ପାଟି ଭିତରୁ ନିଜ ହାତ ବାହାର କରି ଆଣିଲେ । ସମସ୍ତେ ଦେଖିଲେ ଡାକ୍ତରଙ୍କ ଆଙ୍ଗୁଠିରୁ ରକ୍ତ ବୋହୁଛି । ସମସ୍ତେ ଭୟରେ ଚୁପ୍ ହୋଇଗଲେ । ଯନ୍ତ୍ରଣାରେ ଡାକ୍ତରବାବୁ କହିଲେ :

''ଆୟୋଡିନ୍ !''

ତାଙ୍କୁ ଆୟୋଡିନ୍ ଦିଆଗଲା । ସେ ନିଜ ଆଙ୍ଗୁଠିରେ ଆୟୋଡିନ୍ ଲଗାଇଲେ ଓ କହିଲେ : ''ପଟି ଆଣ'' ।

ସାଙ୍ଗେ ସାଙ୍ଗେ ତାଙ୍କ ହାତକୁ ପଟି ବଢେଇ ଦିଆଗଲା । ସେ ଏହାକୁ ବାଁ ହାତରେ ନେଇ ଖଣ୍ଡିଆ ଆଙ୍ଗୁଠିରେ ପଟି ବାନ୍ଧିଲେ ।

ଏହା ପରେ ବେଶ୍ ଧୀର ଗଳାରେ ଡାକ୍ତର କହିଲେ :

''ମୁଁ ଚାଳିଶ ବର୍ଷ ହେଲା ଡାକ୍ତରୀ କରିଆସୁଛି, କିନ୍ତୁ ପ୍ରଥମଥର

ପାଇଁ ଆଜି ମୋତେ ଇଏ କାମୁଡି ଦେଲା । ଆପଣ ଆଉ କାହା ଦ୍ୱାରା ଅପରେସନ୍ କରାନ୍ତୁ । ମୁଁ ଏହି ଚିକିତ୍ସା କରି ପାରିବି ନାହିଁ । ମୁଁ ହାତ ଧୋଉଛି ।''

ଏହାପରେ ସତକୁ ସତ ସେ ସାବୁନ୍ ଓ ପାଣିରେ ହାତ ଧୋଇଦେଲେ ଓ ଚାଲିଗଲେ । ଜେଜେ ବହୁତ ରାଗିଲେ । ସେ କହିଲେ :

''ଆମେ କେବଳ ଏଇ ଡାକ୍ତରଙ୍କ ପାଖରେ ଦେଖାଇବା ପାଇଁ ତୋତେ ମସ୍କୋ ଆଣିଥିଲୁ । ସେ ତୋତେ ଭଲ କରିବାକୁ ଚାହୁଁଥିଲେ । ଆଉ ତୁ ଏ କ'ଣ କଲୁ ? ଏଥର ଶୁଣ ଏଇ ପାଖ ବଖରାରେ ଦାନ୍ତଡାକ୍ତର ରହନ୍ତି । ଯେଉଁ ପିଲା ଡାକ୍ତରଙ୍କୁ କାମୁଡେ, ସେଠାରେ ତା'ର୍ ଦାନ୍ତ ଓପାଡି ଦିଆଯାଏ । କ'ଣ ସେଇଆ କରିବା ତ ? ତୋତେ ମୁଁ ଆରମ୍ଭରୁ କହିଥିଲି, ଅପରେସନ୍ ପରେ ଆଇସ୍‌କ୍ରିମ୍ ଦେବି ।''

ବାପା ଆଇସ୍‌କ୍ରିମ୍ କଥା ଶୁଣି ଚିନ୍ତାରେ ପଡିଗଲେ । କାରଣ ତା'ଙ୍କୁ କେବେ ଆଇସ୍‌କ୍ରିମ୍ ଖାଇବାକୁ ଦିଆଯାଉ ନଥିଲା । ଜେଜେ ଓ ଜେଜେମା'ଙ୍କ ଭୟ ଥିଲା, ଆଇସ୍‌କ୍ରିମ ଖାଇଲେ ବାପାଙ୍କ କାନ, ନାକ ଓ ଗଳାର ଅବସ୍ଥା ଆହୁରି ଖରାପ ହୋଇଯିବ । କିନ୍ତୁ ଆଇସ୍‌କ୍ରିମ୍ ବାପାଙ୍କର ଅତି ପ୍ରିୟ ଥିଲା । ସମସ୍ତେ କହୁଥିଲେ ଏ ଧରଣର ଅପରେସନ୍ ପରେ ପିଲାଙ୍କୁ ଆଇସ୍‌କ୍ରିମ୍ ଦେବା ଉଚିତ୍ । କାରଣ ଏହା ଦ୍ୱାରା ରକ୍ତ ବୋହିବା ବନ୍ଦ ହୋଇଯାଏ । ସେ ସମୟରେ ଲୋକ ଏହା ହିଁ କରୁଥିଲେ । ଏଥିପାଇଁ ଆଇସ୍‌କ୍ରିମ୍ ବିଷୟରେ ଭାବୁ ଭାବୁ ବାପା କହିଲେ :

''ମୁଁ ଆଉ କାମୁଡିବିନି ..... ''

ଏହା ଶୁଣି ବି ଯୁବ ଡାକ୍ତର ଜଣକ ବାପାଙ୍କୁ ଚେତାବନୀ ଦେଇ କହିଲେ :

''ମନେ ରଖ, ତୁମେ ପ୍ରତିଜ୍ଞା କରିଛ !''

ବାପା ପୁଣି କହିଲେ :

''ହଁ ... ହଁ... ମୁଁ କାମୁଡିବି ନାହିଁ .....''

ସେ ଲୋକମାନେ ବାପାଙ୍କୁ ଏକ ବିଶେଷ ଧରଣର ଚଉକିରେ ବସାଇଲେ ଓ ତାଙ୍କର ହାତ ଗୋଡକୁ ଚାପି ଧରିଲେ । ଏହାର କାରଣ ଏହା ନଥିଲା ଯେ, ସେ କାହାକୁ କାମୁଡି ଦେବେ । ଲୋକ ସବୁବେଳେ ଏପରି କରୁଥିଲେ, ଯେପରିକି ଡାକ୍ତରଙ୍କ କାମରେ କୌଣସି ବାଧା ଆସିବ ନାହିଁ । ଏସବୁ ବଡ କଷ୍ଟଦାୟକ ଥିଲା । କିନ୍ତୁ ଯନ୍ତ୍ରଣା ସହି ବାପା କେବଳ ଆଇସକ୍ରିମ୍ କଥା ହିଁ ଭାବୁଥିଲେ । ତା'ପରେ ଡାକ୍ତର କହିଲେ :

"ଓହୋ, କାମଟା ସରିଲା ! ସାବାସ୍ ! ତୁମେ ତ ଜମା କାନ୍ଦିଲ ନାହିଁ !"

ବାପା ବହୁତ ଖୁସି ହେଲେ । ଏ ସମୟରେ ଡାକ୍ତର ହଠାତ୍ କହିଲେ :

"ଆରେ ଆରେ, ଛୋଟିଆ ଖଣ୍ଡଟିଏ ରହିଯାଇଛି । ତୁମେ ଆଉ ଅଳ୍ପ କେତେ ସେକେଣ୍ଡ୍ ପାଇଁ ସହିପାରିବ ?

"ଠିକ୍ ଅଛି," ବାପା କହିଲେ । ସେ ପୁଣି ଆଇସକ୍ରିମ୍ କଥା ଭାବିବାରେ ଲାଗିଲେ ।

"ଓହୋ, ଏଥର ସତକୁ ସତ କାମ ସରିଗଲା !" ଡାକ୍ତର କହିଲେ । "ତୁମେ ବହୁତ ଭଲ ପିଲା ! ଏଥର ତୁମକୁ କିଛି ଆଇସକ୍ରିମ୍ ଦିଆଯାଇପାରେ । ତୁମକୁ କେଉଁ ଆଇସକ୍ରିମ୍ ଭଲ ଲାଗେ ?"

"ଭାନିଲା ଆଇସକ୍ରିମ୍," ବାପା କହିଲେ ଓ ଜେଜେଙ୍କ ଆଡକୁ ଚାହିଁଲେ । କିନ୍ତୁ ଜେଜେ ଏବେ ବି ବାପାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ ।

"ତୋତେ ଆଇସକ୍ରିମ୍ - ଫାଇସକ୍ରିମ୍ କିଛି ମିଳିବନି । ସେପରି କଲେ ହିଁ ଆଗକୁ ତୁ ଆଉ କେବେ କାମୁଡିବୁ ନାହିଁ ।"

ତାଙ୍କୁ ଆଇସକ୍ରିମ୍ ମିଳିବନି ଶୁଣି ବାପା କାନ୍ଦିବାକୁ ଲାଗିଲେ । ତାଙ୍କ ପ୍ରତି ସମସ୍ତଙ୍କର ଦୟା ଆସିଲା । କିନ୍ତୁ ଜେଜେ ନିଜ କଥାରେ ଅଟଳ ରହିଲେ । ବାପାଙ୍କୁ ସେହି ଘଟଣାଟି ଏତେ ଖରାପ ଲାଗିଥିଲା ଯେ ତାହା ଆଜି ବି

ତାଙ୍କର ମନେ ଅଛି । ପରେ ବାପା କେତେ ରକମର ଆଇସ୍‌କ୍ରିମ୍ ଖାଇଛନ୍ତି - ଭାନିଲା, ଚକୋଲେଟ୍, ଷ୍ଟ୍ରବେରୀ, ଏମିତି ସବୁ ଧରଣର ଆଇସ୍‌କ୍ରିମ୍ । କିନ୍ତୁ ସେ ସେହି ଆଇସ୍‌କ୍ରିମ୍ କଥାଟି କେବେ ଭୁଲି ପାରିନାହାନ୍ତି, ଯାହା ତାଙ୍କୁ ଅପରେସନ୍ ପରେ ଦିଆଯିବ ବୋଲି କୁହାଯାଇଥିଲା ।

ଅପରେସନ୍ ପରେ ବାପାଙ୍କର ପୂର୍ବ ପରି ଆଉ ବାରମ୍ବାର ଦେହ ଖରାପ ହେବା ବନ୍ଦ ହୋଇଗଲା । ତାଙ୍କର ଛିଙ୍କ ଓ କାଶ ବି କମିଗଲା । ତାଙ୍କ କାନ ଓ ଗଳା ଦରଜ ବି କମିଗଲା ।

ଅପରେସନ୍ ଯୋଗୁଁ ବାପାଙ୍କର ଅନେକ ଲାଭ ହେଲା । ସେ ବୁଝିଗଲେ, ଭବିଷ୍ୟତରେ ଭଲ ଫଳ ପାଇବା ପାଇଁ ବେଳେବେଳେ କିଛି କଷ୍ଟ ସହିବାକୁ ପଡେ । ତା'ପରେ ଯେବେ ବି କୌଣସି ଡାକ୍ତର ତାଙ୍କୁ ଇଞ୍ଜେକ୍‌ସନ୍ ଦେଇଛନ୍ତି କିମ୍ବା ତାଙ୍କର ପରୀକ୍ଷା କରିଛନ୍ତି, ସେ କାହାରିକୁ କାମୁଡି ନାହାନ୍ତି । କାରଣ ସେ ବୁଝିଥିଲେ, ଏ ସମସ୍ତେ ତାଙ୍କର ଭଲ ପାଇଁ ଏହା କରୁଛନ୍ତି । ପ୍ରତିଥର ଡାକ୍ତରଙ୍କ ପାଖକୁ ଯିବା ପରେ ବାପା କିଛି ଆଇସ୍‌କ୍ରିମ୍ କିଣୁଥିଲେ, କାହିଁକି ନା ଆଜି ବି ବାପାଙ୍କୁ ଆଇସ୍‌କ୍ରିମ୍ ଭଲ ଲାଗେ ।




# ବାପା ନିଜ ପେଶା ବାଛିଲେ

ବାପା ଯେବେ ପିଲା ଥିଲେ, ଅନେକ ସମୟରେ ତାଙ୍କୁ ପଚରା ଯାଉଥିଲା : ''ତୁ ବଡ ହେଲେ କ'ଣ ହେବୁ ?'' ବାପାଙ୍କ ପାଖରେ ସବୁବେଳେ ଏହାର ଉତ୍ତର ପ୍ରସ୍ତୁତ ଥିଲା । କିନ୍ତୁ ସବୁବେଳେ ତାଙ୍କର ଉତ୍ତର ଅଲଗା ଅଲଗା ହେଉଥିଲା । ପ୍ରଥମେ ପ୍ରଥମେ ବାପା ଚୌକିଦାର ହେବାକୁ ଚାହୁଁଥିଲେ । ତାଙ୍କୁ ଏହା ଭାବି ମଜା ଲାଗୁଥିଲା ଯେ, ଯେତେବେଳେ ସାରା ସହର ଶୋଇଥାଏ, ସେତେବେଳେ ଚୌକିଦାର କିନ୍ତୁ ଚେଇଁଥାଏ । ଆଉ ତାଙ୍କୁ ଏହା

ବି ମଜା ଲାଗୁଥିଲା, ଯେତେବେଳେ ସମସ୍ତେ ଶୋଇ ରହିଥିବେ, ସେ ପାଟିକରି ପାରିବେ । ତାଙ୍କର ପୂରା ଇଚ୍ଛା ଥିଲା, ବଡ ହେଲେ ସେ ଚୌକିଦାର ହିଁ ହେବେ । କିନ୍ତୁ ତା'ପରେ ଶାଗୁଆ ଠେଲାଗାଡି ନେଇ ଆଇସକ୍ରିମ୍‌ବାଲା ଆସିଗଲା । ଆରେ ଭାଇ ବାଃ, ସେ ଠେଲାଗାଡି ଧରି ବୁଲିପାରିବେ, ଆଉ ମନଇଚ୍ଛା ଆଇସକ୍ରିମ୍ ବି ଖାଇପାରିବେ । ତାଙ୍କ ମନ ସେଠାରେ ଲାଖିଗଲା ।

''ମୁଁ ଏପଟେ ଗୋଟିଏ ଆଇସକ୍ରିମ୍ ବିକିବା ସାଙ୍ଗକୁ ନିଜେ ବି ଗୋଟିଏ ଖାଇବି,'' ବାପା ଭାବିଲେ । ''ଆଉ ଛୋଟ ପିଲାଙ୍କୁ ତ ମୁଁ ମାଗଣାରେ ଆଇସକ୍ରିମ୍ ଦେଇଦେବି ।''

ବାପାଙ୍କ ମାଆ, ବାପା ଏକଥା ଶୁଣିଲେ । ବାପା ବଡ ହେଲେ ଆଇସକ୍ରିମ୍ ବିକାଳୀ ହେବାକୁ ଚାହୁଁଛନ୍ତି ଜାଣି ସେମାନଙ୍କୁ ଭାରି ଅଡୁଆ ଲାଗିଲା । ତାଙ୍କୁ ଏ କଥାଟି ଖୁବ୍ ମଉଜିଆ ଲାଗିଲା ଓ ସେମାନେ ଖୁବ୍ ହସିଲେ । କିନ୍ତୁ ବାପା ଭାବି ଚାଲିଥିଲେ ଯେ, ବଡ ହେବା ପାଇଁ ଏହା ଏକ ବଢିଆ ବାଟ । ତେଣୁ ସେ ଅଡି ବସିଲେ, ଏହି କାମ କରିବେ । ପୁଣି ଦିନେ ରେଳଷ୍ଟେସନ୍‌ରେ ବାପା ଜଣେ ବିଚିତ୍ର ଲୋକଙ୍କୁ ଦେଖିଲେ । ସେହି ଲୋକଟି ରେଳ ଇଞ୍ଜିନ୍ ଓ ଡବା ସାଥିରେ ଖେଳୁଥିଲା । କିନ୍ତୁ ଏହି ଡବା ଓ ଇଞ୍ଜିନ୍ ଖେଳଣା ନଥିଲା । ଏହା ଥିଲା ଅସଲି ! କେତେବେଳେ ସେ ପ୍ଲାଟ୍‌ଫର୍ମ ଉପରକୁ ଉଠିଆସୁଥିଲା ତ କେତେବେଳେ ଡବା ତଳ ଦେଇଗଲି ଯାଉଥିଲା । ସେ କିଛି ଗୋଟିଏ ଅଜବ କିନ୍ତୁ ମଜାଦାର ଖେଳ ଖେଳୁଥିଲା ।

''ସେ କିଏ ?'' ବାପା ପଚାରିଲେ ।

''ସେ ଶଣ୍ଟିଂ କରନ୍ତି..... ରେଳ ବାଟକୁ ବଦଳାନ୍ତି ।'' ତାଙ୍କୁ କୁହାଗଲା । ବାପାଙ୍କ ପାଇଁ ଏତିକି ସୂଚନା ଯଥେଷ୍ଟ ଥିଲା । ସେ ଠିକ୍ କରିନେଲେ, ବଡ ହେଲେ ସେ କ'ଣ ହେବେ । ଆପଣ ଭାବନ୍ତୁ ତ ଦେଖି ! ସେ ରେଳଡବାଗୁଡିକୁ ଶଣ୍ଟିଂ କରିବେ ! ଆଉ କ'ଣ ଅବା ଏହାଠାରୁ ଅଧିକ ମଜାଦାର୍ ହୋଇପାରେ ?

ବୋଧହୁଏ କିଛି ବି ନାହିଁ । ବାପା ଶୁଣାଇଦେଲେ, ବଡହେଲେ ସେ ଜଣେ ଶଣ୍ଟିଂବାଲା ହେବେ । ଏହାଶୁଣି ତାଙ୍କୁ କେହି ଜଣେ ପଚାରିଲେ :

"ତା' ହେଲେ ଆଇସକ୍ରିମ୍ ବିକିବା ବିଷୟ କ'ଣ ହେବ ?"

ଏହା ସତରେ ଏକ ବଡ ସମସ୍ୟା ଥିଲା । ବାପା ଶଣ୍ଟିଂବାଲା ହେବା ପାଇଁ ଭାବି ସାରିଥିଲେ । କିନ୍ତୁ ଆଇସକ୍ରିମ୍-ବିକା–ଠେଲାଗାଡିଟିକୁ ବି ସେ ଛାଡିବାକୁ ଚାହୁଁ ନଥିଲେ । ଶେଷରେ ସେ ଗୋଟିଏ ବାଟ ବାହାର କଲେ ।

"ମୁଁ ଶଣ୍ଟିଂ କାମ ଓ ଆଇସକ୍ରିମ୍ ବିକା, ଉଭୟ କାମ କରିବି ।"

ସମସ୍ତଙ୍କୁ ଏହା ଆଶ୍ଚର୍ଯ୍ୟ ଲାଗିଲା । କିନ୍ତୁ ବାପା ଅତି ସରଳ ଭାବରେ ସମସ୍ତଙ୍କୁ ବୁଝାଇ ଦେଲେ :

"ଏଥିରେ ଅସୁବିଧା କ'ଣ ଅଛି ? ସକାଳେ ମୁଁ ଆଇସକ୍ରିମ୍ ବିକିବି । କିଛି ସମୟ ଆଇସକ୍ରିମ୍ ବିକିବା ପରେ ମୁଁ ଷ୍ଟେସନ୍କୁ ଚାଲିଯିବି । ସେଠାରେ କିଛି ଡବା ଶଣ୍ଟିଂ କରିବି ଓ ପୁଣି ଯାଇ କିଛି ଆଇସକ୍ରିମ୍ ବିକି ଆସିବି । ଏହାପରେ ପୁଣି ଷ୍ଟେସନ୍ ଯାଇ ଅଳ୍ପ ଡବା ଶଣ୍ଟିଂ କରିବି । ତା'ପରେ ଆଉ କିଛି ସମୟ ଆଇସକ୍ରିମ୍ ବିକିବି । ଏଥିରେ ସେପରି କିଛି ଅସୁବିଧା ନାହିଁ । କାରଣ ମୋ ଠେଲାଗାଡିଟି ମୁଁ ଷ୍ଟେସନ୍ ପାଖରେ ହିଁ ରଖିବି । ତେଣୁ ମୋତେ ଗୋଟିଏ କାମରୁ ଆଉ ଗୋଟିଏ କାମକୁ ଯିବା ପାଇଁ ବେଶୀ ସମୟ ଲାଗିବନି ।"

ଏ କଥା ଶୁଣି ସମସ୍ତେ ହସି ଉଠିଲେ । ବାପା ରାଗିଯାଇ କହିଲେ :

ତୁମେମାନେ ଯଦି ମୋ କଥାକୁ ହସି ଉଡାଇବ, ତେବେ ଏହା ସହିତ ମୁଁ ଚୌକିଦାର ବି ହେବି । ଯାହା ହେଲେ ବି ରାତିରେ ବି ତ ମୁଁ କିଛି କରିବି, ନା ନାହିଁ ?"

ସବୁ କିଛି ଠିକ୍ ହୋଇଗଲା । କିନ୍ତୁ ଏହାପରେ ପୁଣି ବିମାନଚାଳକ (ପାଇଲଟ୍) ହେବା ପାଇଁ ବାପାଙ୍କର ମନ ହେଲା । ତା'ପରେ ସେ ଭାବିଲେ ଅଭିନେତା ହେବେ । କିନ୍ତୁ ଛେଳେ ଥରେ ତାଙ୍କୁ ଗୋଟିଏ କାରଖାନା

ଦେଖାଇବାକୁ  ନେଇଥିଲେ । ତାହା ଦେଖି ସେ ଟର୍ଣର ହେବାକୁ ଚାହିଁଲେ । ଏହାଛଡା ପାଣି ଜାହାଜର ନାବିକ ହେବାର ସ୍ୱପ୍ନ ବି ସେ ଦେଖିଥିଲେ । କିଛି ନ ହେଲେ ହଳିଆ ହୋଇ ବାଡି ହଲାଇ ଗାଈଙ୍କ ପଛରେ ସାରାଦିନ ବୁଲିବା ପାଇଁ ବି ଭାବିଥିଲେ । ଶେଷରେ ସେ ଠିକ୍ କଲେ, କୁକୁରଟିଏ ହିଁ ହେବେ । ସେ ଦିନସାରା ଚାରି ହାତ ଗୋଡରେ ଏଣେତେଣେ ବୁଲିଲେ ଓ ଭୁକିବାରେ ଲାଗିଲେ । ଜଣେ ବୁଢୀ ଲୋକ ତାଙ୍କୁ ଆଦରରେ ଆଉଁସିବାକୁ ଯିବାରୁ ତା'କୁ କାମୁଡିବା ଚେଷ୍ଟା ବି କଲେ । ବାପା ଭୁକିବା କାମଟି ଭାରି ସହଜରେ ଶିଖିଗଲେ, କିନ୍ତୁ ଯେତେ ଚେଷ୍ଟା କଲେ ବି ସେ ନିଜ ଗୋଡରେ କାନପଛ ପାଖକୁ କୁଣ୍ଡାଇ ପାରିଲେ ନାହିଁ । ସେ ଭାବିଲେ, ଯଦି ମୁଁ ବାହାରେ ଥିବା ଆମ ପୋଷା କୁକୁର ପାଖରେ ବସି ଦେଖିବି, ତେବେ ଗୋଡରେ କାନ କୁଣ୍ଡାଇବା ଶୀଘ୍ର ଶିଖି ପାରିବି । ତା'ପରେ ସେ ତାହା ହିଁ କଲେ । ଏ ସମୟରେ ସେ ପାଖ ଦେଇ ସେନା ବିଭାଗର ଜଣେ ଅଜଣା ଅଫିସର ଯାଉଥିଲେ । ସେ ଠିଆ ହୋଇ ବାପାଙ୍କୁ ଦେଖିଲେ । କିଛି ସମୟ ପର୍ଯ୍ୟନ୍ତ ବାପାଙ୍କୁ ଦେଖିବା ପରେ ସେ ପଚାରିଲେ :

''ତୁମେ କ'ଣ କରୁଛ ?''

''ମୁଁ କୁକୁର ହେବାକୁ ଚାହୁଁଛି,'' ବାପା ଜବାବ୍ ଦେଲେ ।

ତା'ପରେ ଅଚିହ୍ନା ଲୋକଜଣକ କହିଲେ :

''ତୁମେ କ'ଣ ମଣିଷ ହେବାକୁ ଚାହୁଁନ ?''

''ମଣିଷ ହୋଇ ବହୁତ ଦିନ ରହିଲିଣି ।'' ବାପା କହିଲେ ।

''ତୁମେ ଯଦି କୁକୁର ବି ବନି ପାରୁ ନାହଁ, ତା' ହେଲେ ତୁମେ କିପରି ମଣିଷ କେଜାଣି ? ମଣିଷ କ'ଣ ଏମିତି ହିଁ ହୋଇଥାଏ ?''

''ଆଚ୍ଛା, ତେବେ ସେ କେମିତି ହୋଇଥାଏ ?'' ବାପା ପଚାରିଲେ ।

''ଏ ବିଷୟରେ ତୁମେ ନିଜେ ନିଜେ ଭାବ ।'' ଏତିକି କହି ଅଫିସର୍

ସେଠାରୁ ଚାଲିଗଲେ । ତାଙ୍କ ମୁହଁରେ ହସର ଟିକିଏ ବି ଛାପ ନଥିଲା । ବାପା ନିଜେ ବଡ ଲଜ୍ଜିତ ମନେ କଲେ ଓ ଏ ବିଷୟରେ ଭାବିବାକୁ ଲାଗିଲେ । ସେ ଏ ବିଷୟରେ ଯେତେ ଅଧିକ ଭାବିଲେ, ସେତିକି ଲଜ୍ଜିତ ଅନୁଭବ କଲେ । ଅଫିସର ତାଙ୍କୁ କିଛି ବି ବୁଝାଇ ନଥିଲେ, କିନ୍ତୁ ହଠାତ୍ ବାପାଙ୍କ ମନରେ ଗୋଟିଏ କଥା ଆସିଲା ଯେ, ସେ ସବୁଦିନ ନିଜର ମତ ଏପରି ବଦଳାଇବା ଠିକ୍ ନୁହେଁ । ଆଉ ସବୁଠୁ ବଡ କଥା ଥିଲା, ସେ ବୁଝିଗଲେ ଯେ, ଏତେ ଛୋଟବେଳୁ ସେ ବଡ ହେଲେ କ'ଣ ହେବେ, ତାହା ଜାଣି ପାରିବେ ନାହିଁ । ପରେ ଯେବେ ତାଙ୍କୁ ଏ ବିଷୟରେ ପଚରାଗଲା, ସେହି ଅଫିସରଙ୍କ କଥା ତାଙ୍କର ମନେ ପଡିଲା ଓ ସେ କହିଲେ :

''ମୁଁ ମଣିଷ ହେବାକୁ ଚାହେଁ ।''

ଏ କଥା ଶୁଣି କେହି ବି ହସିଲେ ନାହିଁ । ବାପା ବୁଝିଗଲେ, ଏହା ସବୁଠୁ ଭଲ ଉତ୍ତର । ଆଜି ବି ସେ ଏହା ହିଁ ଭାବନ୍ତି । ପ୍ରଥମ କଥା, ଆମକୁ ଭଲ ମଣିଷ ହେବାକୁ ପଡିବ । ବିମାନଚାଳକ, ହଳିଆ ଓ ଆଇସକ୍ରିମ୍ ବିକାଳୀ - ସଭିଙ୍କ ପାଇଁ ଏହା ହିଁ ଗୁରୁତ୍ୱପୂର୍ଣ୍ଣ । ଆଉ ମଣିଷ ପାଇଁ ଏହା ଜାଣିବା ସତରେ ଜମା ଦରକାର ନାହିଁ ଯେ, ନିଜ ଗୋଡରେ ନିଜ କାନ ପଛକୁ କିପରି କୁଣ୍ଡା ଯାଏ ।



# ବାପା ସଂଗୀତ ଶିଖିଲେ

ବାପା ଯେବେ ପିଲା ଥିଲେ, ତାଙ୍କ ଘରେ ବାପାଙ୍କ ପାଇଁ ବିଭିନ୍ନ ପ୍ରକାରର ଖେଳଣା କିଣି ଦେଉଥିଲେ - ବଲ୍, ନଟୁ, ଲୁଡୋ, ମୋଟର ଗାଡି - ଏମିତି ଅନେକ କିଛି । ଦିନେ ସେମାନେ ତାଙ୍କ ପାଇଁ ପିଆନୋଟିଏ କିଣିଦେଲେ । ହେଲେ, ଏହା କୌଣସି ଖେଳଣା ନଥିଲା । ଥିଲା ସତରେ ସୁନ୍ଦର ପିଆନୋଟିଏ । ଏହାର ଢାଙ୍କୁଣିଟି କଳା ରଙ୍ଗର ଥିଲା । ଏହା ଏତେ ବଡ଼ ଥିଲା ଯେ, ବଖରାର ଅଧା ଜାଗା ମାଡି ବସିଥିଲା ।

ବାପା ଜେଜେଙ୍କୁ ପଚାରିଲେ :

"ତୁମେ ପିଆନୋ ବଜାଇପାର ?"

'ନା' ଜେଜେ କହିଲେ ।

ବାପା ଜେଜେମା'ଙ୍କୁ ପଚାରିଲେ :

"ତୁମେ ପିଆନୋ ବଜାଇପାର ?"

'ନା' ଜେଜେମା' କହିଲେ ।

"ତାହାହେଲେ ପିଆନୋ ବଜାଇବ କିଏ ?" ବାପା ପଚାରିଲେ ।

ଜେଜେ ଓ ଜେଜେମା' ଏକା ସ୍ୱରରେ କହିଲେ :

"ତୁ ।"

"ହେଲେ, ମୋତେ ବି ତ ପିଆନୋ ବଜାଇ ଆସେ ନାହିଁ ।"

"ତତେ ଶିଖାଯିବ ।" ଜେଜେ କହିଲେ । ଜେଜେମା' କଥାଟିକୁ ଶେଷ କରି କହିଲେ :

"ତତେ ପିଆନୋ ଶିଖାଇବା ପାଇଁ ଜଣେ ଶିକ୍ଷୟିତ୍ରୀ ଆସିବେ । ତାଙ୍କ ନାଁ ନଦେଜ୍‌ଦା ଫେଦୋରଭ୍‌ନା ।"

ବାପା ବୁଝିଲେ, ତାଙ୍କୁ ଏକ ଅଲଗା ଧରଣର ଉପହାର ଦିଆଯାଇଛି । ଆଜି ପର୍ଯ୍ୟନ୍ତ ଘରକୁ କେହି ଶିକ୍ଷକ ଆସି ନଥିଲେ । ବାପା ନିଜର ସବୁ ନୂଆ ଖେଳଣାକୁ ନେଇ ନିଜେ ହିଁ ଖେଳି ଶିଖିଥିଲେ ।

ସଂଗୀତ ଶିଖାଇବା ପାଇଁ ଶିକ୍ଷୟିତ୍ରୀ ଆସିଲେ । ସେ ଥିଲେ ଧୀରେ କଥା କହୁଥିବା ଜଣେ ବୟସ୍କା ମହିଳା । ସେ ବାପାଙ୍କୁ ପିଆନୋ ବଜାଇ ଶୁଣାଇଲେ । ତା'ପରେ ବାପାଙ୍କୁ ସ୍ୱର ଶିଖାଇବା ଆରମ୍ଭ କଲେ । ଏଥିରେ ସର୍ବମୋଟ ସାତଟି ସ୍ୱର ଥିଲା - ସା, ରେ, ଗା, ମା, ପା, ଧା, ନି । ବାପା ଏହା ଖୁବ୍ ଶୀଘ୍ର ଶିଖିଗଲେ । କାରଣ ସେ ନିଜ ବର୍ଣ୍ଣମାଳା ବହିର ଚିତ୍ର ପରି ସ୍ୱରର ବି ଚିତ୍ର ଥିବ ବୋଲି ଭାବି ନେଇଥିଲେ । ସେ କହିଲେ : " 'ସା' ରୁ

ସାଙ୍ଗ,'' ଓ ଏହି ସମୟରେସେ ନିଜ ସାଙ୍ଗର ଚିତ୍ର ମନେ ମନେ ଭାବୁଥିଲେ । '' 'ରେ' ରୁ ରେଳଗାଡି'' ଓ ସେ ରେଳଗାଡିର ଚିତ୍ର ମନେ ମନେ ଭାବି ନେଲେ । ''ଗା ପାଇଁ ଗାଈ'' '' 'ଧା' ରୁ ଧାନ'' ଓ '' 'ନି'ରୁ ନିଶ ଚିତ୍ର ସେ ଭାବୁଥିଲେ । ବାପା ବହୁତ ଖୁସି ଥିଲେ । ହେଲେ, ଅଳପ ଦିନରେ ସେ ବୁଝିଗଲେ ଯେ ପିଆନୋ ଶିଖିବା ଓ ବଜାଇବା ଏତେ ସହଜ ନୁହେଁ । ସେଇ ଗୋଟିଏ ବାଜାକୁ ସବୁବେଳେ ବଜାଇବାକୁ ତାଙ୍କୁ ଭଲ ଲାଗୁ ନଥିଲା । ଏହା ଛଡା ଖେଳିବା, ପଢିବା କିମ୍ବା କିଛି ବି ନ କରିବାକୁ ତାଙ୍କୁ ଅଧିକ ଭଲ ଲାଗୁଥିଲା । କେବଳ ଦୁଇ ସପ୍ତାହ ଭିତରେ ବାପାଙ୍କ ସଂଗୀତ ଶିଖିବା ଆଗ୍ରହ ଚାଲିଗଲା । ସେ ଏତେ ବିରକ୍ତ ହୋଇଗଲେ ଯେ ପିଆନୋଟିକୁ ଦେଖିବାକୁ ବି ତାଙ୍କୁ ଭଲ ଲାଗିଲାନି । ସଂଗୀତ ଶିକ୍ଷୟିତ୍ରୀ ଆରମ୍ଭରେ ବାପାଙ୍କ ଆଗ୍ରହ ଦେଖି ଖୁସି ହେଉଥିଲେ, କିନ୍ତୁ ଏଣିକି ସେ ଦୁଃଖରେ ମୁଣ୍ଡ ହଲାଉଥିଲେ ।

''ତୁମକୁ ଏହା ଶିଖିବାକୁ ଭଲ ଲାଗୁନି ?'' ସେ ବାପାଙ୍କୁ ପଚାରିଲେ

'ନା,' ବାପା କହିଲେ । ସବୁବେଳେ ଏପରି କହିବାବେଳେ ବାପା ଭାବୁଥିଲେ, ଏଣିକି ଶିକ୍ଷୟିତ୍ରୀ ଦୁଃଖରେ ଆସିବା ବନ୍ଦ କରିଦେବେ । ହେଲେ ଶିକ୍ଷୟିତ୍ରୀ ସେପରି କଲେନି । ଏଥିଯୋଗୁଁ ଜେଜେ ଓ ଜେଜେମା' ବାପାଙ୍କୁ ଖୁବ୍ ଗାଳି ଦେଲେ ।

''ଦେଖ, ଆମେ ତୋ ପାଇଁ କେତେ ସୁନ୍ଦର ପିଆନୋ କିଣିଛୁ,'' ସେମାନେ କହିଲେ । ''ତତେ ଶିଖାଇବା ପାଇଁ ଶିକ୍ଷୟିତ୍ରୀ ଆସୁଛନ୍ତି ..... ଅଥଚ ତୁ ଶିଖିବାକୁ ଚାହୁଁନୁ ? ତତେ ଏଥିପାଇଁ ଲାଜ ଲାଗିବା କଥା !''

ତା'ପରେ ଜେଜେ କହିଲେ : ''ଆଜି ସିଏ ସଂଗୀତ ଶିଖିବାକୁ ଚାହୁଁନି । କାଲିକି ସେ ସ୍କୁଲ ଯିବାକୁ ଚାହିଁବନି । ପୁଣି କହିବ, କୌଣସି କାମ କରିବାରେ କିଛି ଲାଭ ନାହିଁ ।, ଏପରି ଡରୁଆ ପିଲାଙ୍କୁ ପିଲାବେଳୁ ହିଁ କାମ କିପରି କରିବାକୁ ହୁଏ ଶିଖାଇବା ଦରକାର । ତତେ ପିଆନୋ ବଜାଇ ଶିଖିବାକୁ

ହେବ ହିଁ ହେବ ।''

ଜେଜେମା' କହିଲେ : ''ମୋତେ ପିଲାବେଳେ ସଂଗୀତ ଶିଖିବାକୁ ମିଳିଥିଲେ, ମୁଁ ନିଜକୁ ଭାଗ୍ୟବାନ ମନେ କରିଥାନ୍ତି ।''

''ଆଚ୍ଛା, ଏହି ମତ ପାଇଁ ତୁମକୁ ବହୁତ ଧନ୍ୟବାଦ ।'' ବାପା କହିଲେ ''କିନ୍ତୁ ମୁଁ ସଙ୍ଗୀତ ଶିଖିବି ନାହିଁ ।''

ତା'ପର ଦିନ ସଂଗୀତ ଶିକ୍ଷୟିତ୍ରୀ ଆସିବା ମାତ୍ରେ ବାପା କୁଆଡେ ହଜିଗଲେ । ଘରସାରା ଓ ବାହାର ଗଳିରେ ତାଙ୍କୁ ଖୋଜାଗଲା । ହେଲେ, ତାଙ୍କୁ କେହି ପାଇଲେନି । ସଂଗୀତ ଶିଖିବା ସମୟ ସରି ଆସିଲା । ଏଥର ବାପା ଖଟ ତଳୁ ବାହାରି ଆସି କହିଲେ : ''ଦିଦି, ନମସ୍କାର ।''

ଜେଜେ ଚିଡି ଉଠି କହିଲେ : '' ରହ, ରହ, ଏଥର **ପସ୍ତାଇବୁ** ଯେ ।''

ଜେଜେମା' ବି କହିଲେ : ''ତୁମ କାମ ସାର, ତା'ପରେ ମୁଁ ବି ତା'କଥା ବୁଝିବି ।''

ଏହା ଶୁଣି ବାପା କହିଲେ : ''ଯଦି ମୋତେ ସଂଗୀତ ଶିଖିବାକୁ ପଡିବନି, ତେବେ ମୋତେ ଯାହା ଦଣ୍ଡ ଦେଲେ ବି ମୋର ଭୟ ନାହିଁ ।

ତା'ପରେ ସେ କାନ୍ଦିବାରେ ଲାଗିଲେ । ସତରେ, ସେ ବହୁତ ଛୋଟ ଥିଲେ । ସଂଗୀତ ଶିଖିବା ପାଇଁ ତାଙ୍କର ଆଗ୍ରହ ନଥିଲା, ତେଣୁ ସଂଗୀତ ଶିକ୍ଷୟିତ୍ରୀ କହିଲେ :

ସଂଗୀତରୁ ଲୋକଙ୍କୁ ଆନନ୍ଦ ମିଳିବା ଉଚିତ୍ । ମୋର କୌଣସି ଛାତ୍ର ମୋତେ ଡରି ଖଟ ତଳେ ଲୁଚେନି । ଯଦି କେହି ଘଣ୍ଟାଏ ଧରି ଖଟ ତଳେ ପଡି ରହେ, ତେବେ ତା'ର ଅର୍ଥ ସେ ସଂଗୀତ ଶିଖିବାକୁ ଆଗ୍ରହୀ ନୁହେଁ । ତେଣୁ ଏପରି ଅବସ୍ଥାରେ ତା'କୁ ବାଧ୍ୟ କରିବାରେ କିଛି ଲାଭ ନାହିଁ । ବଡ଼ ହେଲା ପରେ ଏଥିପାଇଁ ସେ ପଶ୍ଚାତାପ କରିପାରେ । ବରଂ ମୁଁ ସେହି ପିଲାଙ୍କ ପାଖକୁ ଯିବି, ଯେଉଁମାନେ ମୋତେ ଡରି ଖଟ ତଳେ ଲୁଚନ୍ତି ନାହିଁ ।

ସଂଗୀତ ଶିକ୍ଷୟିତ୍ରୀ ଚାଲିଗଲେ । ଏହାପରେ ସେ ଆଉ କେବେ ଆସି ନଥିଲେ । ତଥାପି ଜେଜେ ବାପାଙ୍କୁ ଦଣ୍ଡ ଦେଇଥିଲେ । ଜେଜେଙ୍କ ଠାରୁ ମାଡ ଖାଇ ଆସିବା ପରେ ଜେଜେ ମା' ମଧ୍ୟ ତାଙ୍କୁ ପିଟି ଥିଲେ । ତା'ପରଠୁ ଅନେକ ଦିନ ପର୍ଯ୍ୟନ୍ତ ବାପା ଯେବେ ବି ପିଆନୋ ପାଖଦେଇ ଯାଉଥିଲେ, ତାଙ୍କ ଦେହର ରଙ୍ଗ ବଦଳି ଯାଉଥିଲା ।

ବଡ଼ ହେବା ପରେ ବାପା ବୁଝିଲେ, ତାଙ୍କୁ ସଂଗୀତର ଅ ଆ ବି ଜଣା ନାହିଁ । ଏବେ ବି ସେ କୌଣସି ଗୀତ ଠିକ୍‌ରେ ଗାଇ ପାରନ୍ତି ନାହିଁ । ଆଉ ଭଲ ପିଆନୋ ବଜାଇବା ତ ଦୂରର କଥା ।

ଅବଶ୍ୟ, ଏହା ସତ ଯେ ସବୁ ପିଲାଙ୍କ ପାଇଁ ଭଲ ପିଆନୋ ବଜାଇ ଶିଖିବା ଜରୁରୀ ନୁହେଁ ।



# ବାପା ଚଟାଣ ଉପରକୁ ରୁଟି ଫିଙ୍ଗିଦେଲେ

ବାପା ଯେବେ ପିଲାଥିଲେ, ସୁଆଦିଆ ଖାଦ୍ୟରେ ହିଁ ତାଙ୍କ ମନଟି ରହୁଥିଲା । ତାଙ୍କୁ ମାଛ, ମାଂସ ଭଲ ଲାଗୁଥିଲା । ଛେନା ଭଲ ଲାଗୁଥିଲା । ଖଟା ଓ ମିଠେଇ ଖୁବ୍ ଭଲ ଲାଗୁଥିଲା । କିନ୍ତୁ ରୁଟି ଜମା ଭଲ ଲାଗୁ ନଥିଲା। କାରଣ ତାଙ୍କୁ ସବୁବେଳେ କୁହାଯାଉଥିଲା : ''ତା' ସାଙ୍ଗରେ ରୁଟି ବି ଖାଆ ।''

ହେଲେ ରୁଟି ସୁଆଦିଆ ନ ଥିଲା । ରୁଟି ଖାଇବାକୁ ଭଲ ଲାଗୁ ନଥିଲା । ପିଲାବାପା ଭାବୁଥିଲେ, ରୁଟି ଖାଇବା ବୋକାପଣିଆ । ଆଉ ଖାଇବାବେଳେ

ସେ ଅତି କଷ୍ଟେ ମଷ୍ଟେ ହିଁ ରୁଟି ଖାଉଥିଲେ । ସେ ରୁଟିକୁ ଚକଟି ଛୋଟ ଛୋଟ ଗୁଳା ବନାଇ ଦେଉଥିଲେ । ଏହାର ଧାରଗୁଡିକୁ ଛାଡି ଦେଉଥିଲେ । ରୁଟି ଖଣ୍ଡକୁ ସେ ଟେବୁଲ୍‌ର କନା ତଳେ ଲୁଚାଇ ଦେଉଥିଲେ । ସେ କହିଦେଉଥିଲେ, ମୁଁ ରୁଟି ଖାଇ ସାରିଲିଣି । କିନ୍ତୁ ଏହା ସତ କଥା ନଥିଲା । ସେ ଠିକ୍ କରି ନେଇଥିଲେ, ବଡହେଲେ ସେ କେବେ ବି ରୁଟି ଖାଇବେ ନାହିଁ । ନିଜ ଛୁଆଙ୍କୁ ବି ସେ କେବେ ରୁଟି ଖାଇବାକୁ ବାଧ କରିବେ ନାହିଁ ।

"ମୋତେ ରୁଟି ଖାଇବାକୁ ଦିଆ ନଗଲେ କେତେ ବଢିଆ ହୁଅନ୍ତା ।" ବାପା ଭାବୁଥିଲେ । "ମୁଁ କହିବି : ଆଜିର ଜଳଖିଆ କ'ଣ ? ଛେନା ? ବାଃ, ବିନା ରୁଟିରେ ଛେନା !! ଆଉ ମାଛ, ମାଂସ ବି ରୁଟି ବିନା ! ଖଟା ଓ ଭଜା ବି ବିନା ରୁଟିରେ ! ଆସନ୍ତାକାଲି ରୁଟି ଖାଇବାକୁ ପଡିବନି, ଭାବି ଶୋଇବା କେତେ ମଜାଦାର ନ ହେବ ।" ବାପା ଯେବେ ପିଲା ଥିଲେ, ସେ ଏପରି ହିଁ ଚିନ୍ତା କରୁଥିଲେ ଓ ଏହା ଭାବି ସେ ଏତେ ବ୍ୟସ୍ତ ହୋଇ ଯାଉଥିଲେ ଯେ, ସେ ବଡହେବା ପର୍ଯ୍ୟନ୍ତ ଅପେକ୍ଷା କରି ପାରୁ ନଥିଲେ ।

ଜେଜେ, ଜେଜେମା' ଓ ଅନ୍ୟମାନେ ତାଙ୍କୁ ବତାଇଲେ, ସେ ଭୁଲ କରୁଛନ୍ତି । ସେମାନେ କହୁଥିଲେ, ରୁଟି ନ ଖାଇଲେ ଦେହ ଖରାପ ହୋଇଯିବ । ସେମାନେ ତାଙ୍କୁ ଶୁଣାଇ ବି ଦେଲେ, ରୁଟି ନ ଖାଇଲେ ତତେ ଦଣ୍ଡ ଦିଆଯିବ । ହେଲେ, ବାପା କାହାରି କଥା ଶୁଣୁ ନଥିଲେ ।

ଥରେ ଗୋଟିଏ ଭୟଙ୍କର ଘଟଣା ଘଟିଲା । ସେ ସମୟରେ ଜଣେ ବୟସ୍କା ମାଉସୀ ବାପାଙ୍କର ଦେଖାଚାହାଁ କରୁଥିଲେ । ସେ ବାପାଙ୍କୁ ବହୁତ ସ୍ନେହ କରୁଥିଲେ । କିନ୍ତୁ ଖାଇବା ଟେବୁଲ୍‌ରେ ବାପାଙ୍କର ରୁଟି ନ ଖାଇବା ଜିଦ୍ ପାଇଁ ସେ ଖୁସି ନଥିଲେ । ଦିନେ ଜେଜେ ଓ ଜେଜେମା' ଦୁହେଁ କିଛି କାମରେ ବାହାରକୁ ଯାଇଥିଲେ । ବାପା ଏକା ବସି ଖାଉଥିଲେ । ସବୁଥର ପରି ସେ ରୁଟି ଖାଇବାକୁ ଚାହୁଁ ନଥିଲେ । ମାଉସୀ କହିଲେ :

"ତୁ ତୋ ରୁଟି ଜଲ୍‌ଦି ଖାଇଦେ, ନଚେତ୍ ତତେ ଆଉ କିଛି ବି ଦେବିନି ।"

ବାପା କହିଲେ : "ମୁଁ ରୁଟି ନେବି ନାହିଁ ।"

"ତତେ ନେବାକୁ ହେବ ।" ମାଉସୀ କହିଲେ ।

"ନା, ନେବିନି !" ବାପା କହିଲେ ।

ଏପରି କହି ବାପା ରାଗରେ ନିଜ ରୁଟି ଚଟାଣ ଉପରକୁ ଫିଙ୍ଗିଦେଲେ । ମାଉସୀ ଏତେ ରାଗିଗଲେ ଯେ, ତାଙ୍କ ମୁହଁରୁ ପଦେ ବି କଥା ବାହାରିଲାନି । ସାଧାରଣ ଗାଳି ଦେବାଠୁଁ ଏହା ଅଧିକ ସାଂଘାତିକ ଥିଲା । ସେ ଚୁପ୍‌ଚାପ୍ ବାପାଙ୍କୁ ଅନାଇଥାନ୍ତି ।

ଶେଷରେ ସେ କହିଲେ : "ତୁ କ'ଣ ଭାବୁଛୁ, ତୁ କେବଳ ଖଣ୍ଡିଏ ରୁଟି ହିଁ ଚଟାଣ ଉପରକୁ ଫିଙ୍ଗିଛୁ ? ମୁଁ ଏବେ ତତେ ବତାଉଛି, ତୁ କ'ଣ ଫିଙ୍ଗିଛୁ । ମୁଁ ଯେବେ ଛୋଟ ଥିଲି, ରୁଟି ଖଣ୍ଡେ ପାଇବା ପାଇଁ ମୋତେ ସାରାଦିନ ବତକଙ୍କ ଯତ୍ନ ନେବାକୁ ପଡୁଥିଲା । ଥରେ ଶୀତଦିନେ, ଆମ ଘରେ ଖାଇବା ପାଇଁ କିଛି ନଥିଲା । ଆଉ ମୋ ଭାଇ, ଯିଏ ତୋ' ପରି ହୋଇଥିଲା, ଖାଇବାକୁ ନ ପାଇ ଭୋକରେ ମରିଗଲା । ତାକୁ କିଏ ଏମିତି ରୁଟି ଖଣ୍ଡିଏ ଦେଇଦେଇଥିଲେ, ସେ ମରି ନଥାନ୍ତା !! ତୁମକୁ ଲୋକେ ପଢାଲେଖା ତ ଶିଖାଉଛନ୍ତି, ହେଲେ ଏହା ଶିଖାଉନାହାନ୍ତି, ରୁଟି କେଉଁଠୁ ଆସେ । ଲୋକେ ଫସଲ ପାଇବା ପାଇଁ ଓ ରୁଟି ତିଆରି କରିବା ପାଇଁ ହାଡଭଙ୍ଗା ପରିଶ୍ରମ କରୁଛନ୍ତି, ଆଉ ତୁ ତା'କୁ ଚଟାଣ ଉପରକୁ ଫିଙ୍ଗୁଛୁ ! ତତେ ଲାଜ ଲାଗିବା କଥା ।"

ବାପା ଶୋଇବାକୁ ଚାଲିଗଲେ । କିନ୍ତୁ ତାଙ୍କୁ ଭଲ ନିଦ ହେଲାନି । ସେ ରାତିରେ ଅନେକ ଭୟଙ୍କର ସ୍ୱପ୍ନ ଦେଖିଲେ । ସକାଳେ ଉଠିବାପରେ ତାଙ୍କୁ ଜଣାଇ ଦିଆଗଲା, ତାଙ୍କୁ ଦଣ୍ଡସ୍ୱରୂପ ଦିନସାରା ରୁଟି ଦିଆଯିବ ନାହିଁ । ଅନେକ

ସମୟରେ ଖାଇବାପରେ ବାପାଙ୍କୁ ମିଠେଇ ଦିଆଯାଉ ନଥିଲା । ଦିନେ ଦିନେ ରାତିରେ ତାଙ୍କୁ ନଖାଇ ଶୋଇବାକୁ ପଡୁଥିଲା । ହେଲେ, ଏହା ତାଙ୍କ ଜୀବନର ପ୍ରଥମ ଦିନ ଥିଲା, ଯେବେ ତାଙ୍କୁ ରୁଟି ଖାଇବାକୁ ଦିଆଗଲା ନାହିଁ । ଏସବୁ ମାଉସୀଙ୍କର ହିଁ ବୁଦ୍ଧି ଥିଲା । ଏହା ଉଚିତ୍ ବିଚାର ଥିଲା । ବାପା ଜଳଖିଆରେ ବିନା ରୁଟିରେ ମେଞ୍ଚାଏ ଛେନା ହିଁ ଖାଇଲେ । ଏହା ଭାରି ସୁଆଦିଆ ଥିଲା; ମିନିଟ୍କ ଭିତରେ ସେ ଏହା ଖାଇଦେଲେ । କିନ୍ତୁ, ଜଳଖିଆ ଖାଇବାପରେ ବି ତାଙ୍କୁ ଭୋକ ହେଉଥିଲା । କାହିଁକି ନା' ସେ ରୁଟି ଖାଇ ନଥିଲେ । ଖରାବେଳ ଖିଆଯାଏଁ ଅପେକ୍ଷା କରିବା ବାପାଙ୍କ ପାଇଁ କଷ୍ଟକର ଥିଲା । କିନ୍ତୁ ସେତେବେଳକୁ ବି ବିନା ରୁଟିରେ ତରକାରୀ ଖାଇ ତାଙ୍କ ପେଟ ପୂରିଲାନି । ଦିନସାରା ରୁଟି ଅଭାବରେ ସେ ଭୋକିଲା ରହିଥିଲେ । ରାତିରେ ତାଙ୍କୁ କେବଳ ଅଣ୍ଡାଭଜା ଦିଆଗଲା । ବିନା ରୁଟିରେ ଅଣ୍ଡାଭଜା ବହୁତ ଖରାପ ଲାଗିଲା ।

ସମସ୍ତେ ବାପାଙ୍କୁ ଥଟ୍ଟା କରି ହସୁଥାଆନ୍ତି । ଚିଡାଇ କହୁଥାନ୍ତି, ବର୍ଷେ ପର୍ଯ୍ୟନ୍ତ ତାଙ୍କୁ ରୁଟି ଦିଆଯିବ ନାହିଁ । ମାତ୍ର, ତା' ପରଦିନ ତାଙ୍କୁ ଖଣ୍ଡିଏ ରୁଟି ଦିଆଗଲା । ତାହା ତାଙ୍କୁ ବହୁତ ସୁଆଦିଆ ଲାଗିଲା । କେହି କିଛି କହିଲେନି । କିନ୍ତୁ ବାପା ତାହା ଖାଇବାବେଳେ ସମସ୍ତେ ତାଙ୍କୁ ଚାହିଁ ରହିଥିଲେ । ବାପାଙ୍କୁ ବହୁତ ଲାଜ ଲାଗିଲା । ସେହିଦିନରୁ ସବୁବେଳେ ସେ ନିଜର ରୁଟି ଖାଇ ନେଉଛନ୍ତି । ଆଉ କେବେ ଚଟାଣ ଉପରକୁ ରୁଟି ଫିଙ୍ଗିନାହାନ୍ତି ।



# ବାପା ଯେବେ ରାଗି ଯାଉଥିଲେ

ପିଲାବେଳେ ଅନେକ ସମୟରେ ବାପା ଛୋଟ ଛୋଟ କଥାରେ ଚିଡି ଯାଉଥିଲେ । ସେ କାହାରି ଉପରେ ଖୁସି ନ ଥିଲେ । ଏକା ଏକା ହେଉ ଅବା ଏକାଠି ହେଉ ଯଦି କିଏ କହୁଥିଲେ, ''ତୁ ଏତେ କମ୍ କାହିଁକି ଖାଉଛୁ ?'' ତାହାହେଲେ ସେ ଚିଡି ଯାଉଥିଲେ । ଆଉ ଯଦି କିଏ କହୁଥିଲା, ''ତୁ ତୋ ପେଟକୁ ଏତେ ଭାରି କାହିଁକି କରୁଛ ?'' ତେବେ ବି ସେ ଚିଡି ଯାଉଥିଲେ ।

ସେ ଜେଜେମା'ଙ୍କ ଉପରେ ବି ଚିଡିଯାଉଥିଲେ । କାରଣ ସେ ଜେଜେମା'ଙ୍କୁ କିଛି ଗୋଟାଏ କହିବାକୁ ଚାହୁଁଥିଲେ । ହେଲେ, ଜେଜେମା'

ଅନ୍ୟ କାମରେ ବ୍ୟସ୍ତ ରହି ତାଙ୍କ କଥା ଶୁଣିବାକୁ ସମୟ ପାଉ ନ ଥିଲେ । ସେ ଢେଢେଙ୍କ ଉପରେ ବି ଚିଡିଥିଲେ । କାରଣ ଢେଢେ ତାଙ୍କୁ କିଛି କହିବାକୁ ଚାହୁଁଥିଲେ, ଆଉ ବାପାଙ୍କର ତାହା ଶୁଣିବାକୁ ସମୟ ନ ଥିଲା । ଯେତେବେଳେ ବାପାଙ୍କର ବାପା, ମା' କାହା ଘରକୁ ବୁଲି ଯାଉଥିଲେ ବା ଡ୍ରାମା ଦେଖିବାକୁ ଯାଉଥିଲେ, ସେତେବେଳେ ସେ ରାଗି ଯାଉଥିଲେ ଓ କାନ୍ଦୁଥିଲେ । ସେ ଚାହୁଁଥିଲେ, ତାଙ୍କ ବାପା, ମା ସବୁ ବେଳେ ଘରେ ତାଙ୍କରି ସହ ରହନ୍ତୁ । ଏହାଛଡା, ବାପା ଯେତେବେଳେ ସର୍କସ ଯିବାକୁ ଚାହୁଁଥିଲେ, ସେତେବେଳେ ସେ ଅଧିକ ଜୋର୍‌ରେ କାନ୍ଦୁଥିଲେ । କାରଣ ତାଙ୍କ ସାଙ୍ଗରେ ଯିବାକୁ କେହି ନଥିଲେ । ବାପାଙ୍କ ସାନ ଭାଇ ସେତେବେଳେ ବହୁତ ଛୋଟ ଥିଲେ । ତାଙ୍କ ଉପରେ ବାପା ରାଗୁଥିଲେ । କାହିଁକି ନା, ସେ ବାପାଙ୍କ ସହ କଥା ହେଉ ନ ଥିଲେ । ସେ ବାପାଙ୍କ ଆଡକୁ ଚାହିଁ କେବଳ ହସୁଥିଲେ ଓ ନିଜ ଆଙ୍ଗୁଠି ଚାପୁଥିଲେ । ସେ ଏତେ ଛୋଟ ଥିଲେ ଯେ କେବଳ ''ଦା-ଦା''ହିଁ କହି ପାରୁଥିଲେ । ତଥାପି ବାପା ତାଙ୍କ ଉପରେ ରାଗୁଥିଲେ । ଦାଦା, ଖୁଡି ଆସିଲେ ବି ବାପା ସେମାନଙ୍କ ଉପରେ ଖୁସି ନଥିଲେ । ବେଳେ ବେଳେ ସେ ଭାବୁଥିଲେ, ଖୁଡି ତାଙ୍କୁ ଥଟ୍ଟା କରୁଛନ୍ତି । ପୁଣି କେବେ ସେ ଭାବୁଥିଲେ, ଦାଦା ତାଙ୍କ ସହ କଥା ହେବାକୁ ଚାହୁଁ ନାହାନ୍ତି । ଏପରି ଅନେକ ଭାବନା ତାଙ୍କ ମନକୁ ଆସୁଥିଲା । ବିଚିତ୍ର କଥା ଥିଲା, ବାପା ଭାବୁଥିଲେ ଦୁନିଆରେ ସେ ହିଁ ଭଲ ।

ଯଦି ସେ କିଛି କହିବାକୁ ଚାହୁଁଥିଲେ, ତେବେ ଅନ୍ୟମାନଙ୍କୁ ଚୁପ୍ ରହିବାକୁ ହେଉଥିଲା । ପୁଣି ଯଦି ସେ କଥା ହେବାକୁ ଚାହୁଁ ନଥିଲେ, ତେବେ ବି ସମସ୍ତଙ୍କ ପାଇଁ କଥା କହିବା ମନା ଥିଲା ।

ସେ ଯଦି ବିଲେଇ ପରି ବୋବାଇବା, କୁକୁର ପରି ଭୁକିବା, ଇତ୍ୟାଦି କରିବାକୁ ଚାହୁଁଥିଲେ, ତେବେ ସମସ୍ତଙ୍କୁ ଅନ୍ୟ କାମ ବନ୍ଦ କରି ବାପାଙ୍କର ସେ ବିଚିତ୍ର ଶବ୍ଦ ସବୁ ଶୁଣିବାକୁ ପଡୁଥିଲା । ବାପା କେବେ ଭାବୁ ନ ଥିଲେ

ଯେ ଅନ୍ୟମାନେ ବି ତାଙ୍କ ପରି ମଣିଷ । ଯଦି କେହି ତାଙ୍କ ସହ ଯୁକ୍ତି ବା କଳି କରୁଥିଲେ, ତେବେ ବି ସେ ଚିଡି ଯାଉଥିଲେ । ଏହା ବହୁତ ଖରାପ ହେଉଥିଲା । ବାପା ମୁହଁ ଶୁଖାଇ, ରାଗରେ ଦମ୍ ଦମ୍ ହୋଇ ଚାଲି ଯାଉଥିଲେ ।

ସେ ସବୁବେଳେ କାହା ନା' କାହା ଉପରେ ଅସନ୍ତୁଷ୍ଟ ଥିଲେ । ସେ ଅନ୍ୟ ମାନଙ୍କ ସହ ଝଗଡା କରୁଥିଲେ କିମ୍ବା ରୁଷିକରି ବସୁଥିଲେ । ସକାଳୁ ସଞ୍ଜ ଯାଏଁ ତାଙ୍କୁ ଶାନ୍ତ ଓ ଖୁସି କରିବାକୁ ପଡୁଥିଲା । ସକାଳୁ ଆଖି ଖୋଲିବାବେଳୁ ହିଁ ସେ ଚିଡି ଯାଉଥିଲେ, କାରଣ ଖରା ତାଙ୍କୁ ଉଠାଇ ଦେଉଥିଲା । ରାତିରେ ଶୋଇ ବି ସେ ଚିଡିଯାଇ ମୁହଁ ଫୁଲାଇ ରହୁଥିଲେ କାହାରି ଉପରେ । ବାପା ଅନ୍ୟ ପିଲାଙ୍କ ସହ ଖେଳିଲାବେଳେ ଅବସ୍ଥା ଆହୁରି ଖରାପ ହୋଇଯାଉଥିଲା ।

ସେ ଚାହୁଁଥିଲେ , ତାଙ୍କ ପସନ୍ଦର ଖେଳ ହିଁ ସମସ୍ତେ ଖେଳନ୍ତୁ । ସେ କେତେ ଜଣ ପିଲାଙ୍କ ସଙ୍ଗରେ ଖେଳିବାକୁ ଚାହୁଁଥିଲେ । ଆଉ କେତେ ଜଣଙ୍କୁ ସେ ଜମା ପସନ୍ଦ କରୁ ନ ଥିଲେ । ଯୁକ୍ତି ହେଲେ ସେ ନିଜ କଥା ହିଁ ଠିକ୍ ବୋଲି ସମସ୍ତଙ୍କୁ ମନେଇବାକୁ ଚେଷ୍ଟା କରୁଥିଲେ । ସେ ସଭିଙ୍କୁ ଥଟ୍ଟା କରୁଥିଲେ, କିନ୍ତୁ ଅନ୍ୟ କେହି ତାଙ୍କର ଥଟ୍ଟା କରିବାଟାକୁ ସେ ପସନ୍ଦ କରୁ ନଥିଲେ । କିଛିଦିନ ମଧ୍ୟରେ ସମସ୍ତେ ବାପାଙ୍କର ଏ ପ୍ରକାର ବ୍ୟବହାରରେ ବିରକ୍ତ ହୋଇଗଲେ । ସମସ୍ତେ ବାପାଙ୍କର ଥଟ୍ଟା କଲେ । ବାପାଙ୍କ ବାପା, ମା କହୁଥିଲେ :

"ଚା' ପିଇବାକୁ ଚାହୁଁଛୁ ? ହେଲେ ଚିଡି ଯାଆନି !"

"ବୁଲିବାକୁ ଯାଉଛୁ ?ହେଲେ ଚିଡି ଯାଆନ !"

"କ'ଣ ଏବେ ବି ତୁ ଚିଡିଛୁ ନା' କ'ଣ ?"

"ଆଚ୍ଛା, ଜଲ୍‌ଦି ତୁ ଚିଡିଯାଆ । ତୋ ସାଙ୍ଗରେ ଲାଗିବାକୁ ଆମର ଏତେ ବେଳ ନାହିଁ !"

ଏ ସବୁ ଶୁଣି ବାପା ଚିଡି ଯାଉଥିଲେ । ବାହାରେ ପିଲାମାନେ ତାଙ୍କୁ ଚିଡାଉଥିଲେ । ସେମାନେ କହୁଥିଲେ :

"କାନ୍ଦୁରା ପିଲା, କାନ୍ଦ ।" ଏହା ଶୁଣି ବାପା ମୁହଁ ଫୁଲାଇ ଚାଲି ଆସୁଥିଲେ ।

"ଦେଖ, ମୁଁ ମୋ ଆଙ୍ଗୁଠି ହଲାଇବି ଓ ସେ ଏଥିରେ ବି ରାଗିଯିବ ।" କେଉଁ ପିଲା ଏପରି କହି ଆଙ୍ଗୁଠି ହଲାଉଥିଲା ଓ ବାପା ରାଗି ଯାଉଥିଲେ ।

ପୁଣି ସମସ୍ତେ ହସୁଥିଲେ । ପିଲାଙ୍କୁ ସତରେ ମଜା ଲାଗୁଥିଲା । କାହିଁକି ନା ବାପାଙ୍କୁ ଚିଡାଇବା ଭାରି ସହଜ ଥିଲା । ସେମାନେ ଚିଡେଇ ଚିଡେଇ ବାପାଙ୍କୁ ବହୁତ ହଇରାଣ କରି ଦେଉଥିଲେ । ଶେଷରେ ଜଣେ ପିଲା, ଯେ ବାପାଙ୍କଠୁ ବଡ଼ ଥିଲା, ଦିନେ ଦୟା ଦେଖାଇ କହିଲା :

"ତୁ ପ୍ରତି କଥାରେ କାହିଁକି ରାଗୁଛ ? ତୁ ଯଦି ଅନ୍ୟମାନଙ୍କ ଏସବୁ କଥାକୁ ଧ୍ୟାନ ନ ଦେବୁ, ତେବେ ସମସ୍ତେ ତତେ ଚିଡାଇବା ବନ୍ଦ କରିଦେବେ ।"

ବାପା ତାଙ୍କ କଥା ମାନି ନେଲେ । ପ୍ରତି କଥାରେ ନ ଚିଡିବା ପାଇଁ ସେ ଚେଷ୍ଟା କଲେ । ଏଥର ପିଲାମାନେ ବି ତାଙ୍କୁ ଚିଡାଇବା ବନ୍ଦ କରିଦେଲେ । ତଥାପି ସେ ସବୁବେଳେ ରାଗିବାରେ ଏତେ ଅଭ୍ୟସ୍ତ ହୋଇ ଯାଇଥିଲେ ଯେ, ସେ ବଡ଼ ହେବା ଯାଏଁ, ତାଙ୍କର ଏହି ଖରାପ ଅଭ୍ୟାସ ଛାଡି ନ ଥିଲା । ବଡ଼ ହେଲା ପରେ ବି ପୂରା ନୁହେଁ । ସ୍କୁଲରେ ଓ କାମ କଲାବେଳେ ଏହି ଖରାପ ଅଭ୍ୟାସ ଯୋଗୁଁ ତାଙ୍କର କେତେଜଣ ସାଙ୍ଗଙ୍କ ସହ ସମ୍ପର୍କ ଖରାପ ହୋଇଗଲା । ସେମାନେ ତାଙ୍କ ସହ କଥା ହେବା ବନ୍ଦ କରିଦେଲେ । ଯେଉଁ ଲୋକମାନେ ବାପାଙ୍କୁ ପିଲାବେଳୁ ଜାଣିଥିଲେ, ସେମାନେ ଆଜି ବି ବେଳେବେଳେ ବାପାଙ୍କୁ ଚିଡାନ୍ତି । କିନ୍ତୁ ଆଜିକାଲି ବାପା ଆଉ ଚିଡନ୍ତିନି ।



# ବାପା ଭୁଲ କଲେ

ପିଲା ଥିଲାବେଳେ ବାପାଙ୍କୁ ପିଇବା ପାଇଁ ଦୁଧ, ପାଣି, ଚା' ଓ ମାଛତେଲ ଦିଆଯାଉଥିଲା ।

ସମସ୍ତେ ମାନୁଥିଲେ, ବଢ଼ିଲା ପିଲାଙ୍କ ପାଇଁ ମାଛତେଲ ବହୁତ ଦରକାରୀ ଅଟେ । କିନ୍ତୁ ବାପାଙ୍କ ପାଇଁ ଏହା ଅତ୍ୟନ୍ତ ଅଖାଦ୍ୟ ଥିଲା । ସେ ଭାବୁଥିଲେ, ଦୁନିଆରେ ମାଛ ତେଲଠାରୁ ବଳି ଆଉ କିଛି ବି ଖରାପ ଜିନିଷ ନଥିବ । କିନ୍ତୁ ତାଙ୍କର ଏହି ଧାରଣାଟି ପୂରାପୂରି ଭୁଲ ଥିଲା ।

ଥରେ ଖରାଦିନେ ବାପା ଘର ବାହାରେ ଖେଳୁଥିଲେ । ସେହି ଦିନଟି ବହୁତ ଗରମ ଲାଗୁଥାଏ । ବାପା ବହୁତ ଧାଁଦଉଡ କରି ଥକି ଯାଇଥାନ୍ତି । ତାଙ୍କୁ ଖୁବ୍ ଶୋଷ ଲାଗୁଥାଏ । ପାଣି ପାଇଁ ସେ ଘରକୁ ଦଉଡିଲେ । ଘରେ

ସମସ୍ତେ ଯେ ଯାହାର କାମରେ ଲାଗିଥିଲେ । ଜେଜେମା' ବସି ପୁରି ଛାଣୁଥାନ୍ତି । ଘରକୁ କିଏ ଅତିଥି ଆସିବାର ଥାଏ । ଖାଇବା ମେଜ ଉପରେ ସେମାନଙ୍କ ପାଇଁ ଖାଦ୍ୟ ପରଷା ଚାଲିଥାଏ । ବାପା ସୁରେଇରୁ ପାଣି ଢାଳି ଗୋଟିଏ ଗିଲାସରେ ଭରିଲେ । କିନ୍ତୁ କାହାର ବି ଏଥିପ୍ରତି ନିଘା ନଥାଏ । ବାପା ଜାଣିଥିଲେ ଯେ, ସବୁଦିନ ପରି ସେଦିନ ବି ଫୁଟାପାଣିକୁ ଥଣ୍ଡା କରି ସୁରେଇରେ ଢଳାଯାଇଛି । ସେ ଗୋଟିଏ ନିଃଶ୍ୱାସରେ ଅଧା ଗିଲାସ ପାଣି ପାଟିରେ ଢାଳିଦେଲେ । କିନ୍ତୁ ଏତିକିରେ ବାପାଙ୍କର ଦମ୍ ବାହାରିଗଲା । ସେ ବୁଝିପାରିଲେନି, ତାଙ୍କର କ'ଣ ହୋଇଯାଉଛି ।

ବାପାଙ୍କୁ ଲାଗିଲା ସତେ ଯେମିତି ସେ ଗିଲାସେ ଗରଳକୁ ପିଇ ଦେଇଛନ୍ତି । ସେ ପୁଣି ଭାବିଲେ, ପାଣି ଠିକ୍ ଥାଇପାରେ, ହୁଏତ ତାଙ୍କରି କିଛି ଗୁରୁତର ଅସୁବିଧା ହୋଇଯାଇଛି । ସେ ବହୁତ ଘବରାଇଗଲେ । ସେ ଭାବିଲେ, ତାଙ୍କ ପ୍ରାଣଟା ଚାଲିଯିବ । ସେ ଏମିତି ଚଲ୍ଲାଇଲେ ଯେ ସମସ୍ତେ ତାଙ୍କରି ପାଖକୁ ଦଉଡି ଆସିଲେ ।

ବାପା ଶ୍ୱାସ ନେଉଥାନ୍ତି । କିନ୍ତୁ ତାଙ୍କର ଦମ୍ ବାହାରି ଯାଉଥାଏ । ତାଙ୍କୁ ଲାଗୁଥାଏ ସତେ ଯେପରି ତାଙ୍କ ପାଟିରେ ନିଆଁ ଲାଗିଯାଇଛି । ତାଙ୍କ ଅବସ୍ଥା ଅଧିକରୁ ଅଧିକ ଖରାପ ହେବାରେ ଲାଗିଥାଏ । କେହି ବି ବୁଝିପାରୁ ନଥାନ୍ତି, ତାଙ୍କର କ'ଣ ହୋଇଯାଇଛି ?

ହାୟ, ଏହାର ଅବସ୍ଥା ବହୁତ ଖରାପ ହୋଇଯାଇଛି ! ଜେଜେମା' ଚିଲାଇଲେ ।

ଜେଜେ ଚିଡିଯାଇ କହିଲେ, ''ଇଏ ଜାଣିଶୁଣି ମିଛିମିଛିକା ଏମିତି ନାଟକ କରୁଛି । ବୁଝିଲ ?''

ଏଥର ମାଉସୀ ଆସି ପହଞ୍ଚିଲେ । ସେ ବି ଭାବୁଥାନ୍ତି କ'ଣ ହୋଇଛି ? ସେ ଅବଶ୍ୟ ଘଟଣାଟିକୁ ସାଙ୍ଗେ ସାଙ୍ଗେ ବୁଝିଗଲେ ।

''ଶୁଣ, ଶୁଣ, ସେ ଭୋଦ୍‌କା(ଋଷୀୟ ମଦ) ପିଇଦେଇଛି । ସେ

ଭୋଦ୍‌କା ହିଁ ପିଇଛି !'' ମାଉସୀ କହିଲେ । ''ଏହା ନିଶ୍ଚୟ । ସେ ସୁରେଇରୁ ଭୋଦ୍‌କା ପିଇଥିବାରୁ ତା'ର ଏହି ଅବସ୍ଥା ହୋଇଛି ।''

ଏହା ଶୁଣି ସମସ୍ତେ ଚିତ୍କାର କରିବାରେ ଲାଗିଲେ ।

''ଡାକ୍ତରଙ୍କୁ ଡାକ ।'' ଜେଜେମା' କହିଲେ ।

''ଆଜି ମୁଁ ତା'ର ଚମଡା ଉତାରିଦେବି !''ଜେଜେ ଗର୍ଜନ କଲେ ।

''ତାକୁ କିଛି ଖାଇବାକୁ ଦିଅ !'' ମାଉସୀ କହିଲେ ବାପା ଏଥର ଖଣ୍ଡିଏ ପିଠା ପାଇଗଲେ । ପିଠାଟିକୁ ଚୋବାଉ ଚୋବାଉ ସେ ଧୀରେ ଧୀରେ କହିଲେ, ''ମୁଁ ଭାବୁଛି, ଭୋଦ୍‌କା ପିଇଲେ ତ ବଳ ହୁଏ ବୋଧେ !''

ହଠାତ୍ ବାପାଙ୍କ ଅବସ୍ଥା ଆହୁରି ବିଗିଡିଗଲା । ସେ ଚଟାଣ ଉପରେ ବସିଗଲେ । ତାଙ୍କର ମୁଣ୍ଡ ଘୂରାଇବାରେ ଲାଗିଲା ।

ଏହାପରେ କ'ଣ ହେଲା ବାପାଙ୍କର କିଛି ବି ମନେ ନାହିଁ । କିନ୍ତୁ ପରେ ସେ ଅନ୍ୟମାନଙ୍କଠୁ ଶୁଣିଲେ ଯେ, ସେ ସେହି ଦିନସାରା ଶୋଇ ରହିଥିଲେ । ସନ୍ଧ୍ୟାବେଳକୁ ତାଙ୍କୁ ଟିକେ ଭଲ ଲାଗିଲା । ଅତିଥିମାନେ ଘରକୁ ଆସିଲେ ଓ ଭୋଦ୍‌କା ପିଇବାରେ ଲାଗିଲେ । ନିଜ ବିଛଣା ଉପରେ ପଡିରହି ବାପା ସେମାନଙ୍କୁ ଚାହୁଁଥାନ୍ତି । ସେମାନଙ୍କ ପ୍ରତି ବାପାଙ୍କର ଖୁବ୍ ଦୟା ଆସୁଥାଏ । ସେ ଜାଣିଥିଲେ ଯେ, ଆଉ ଅଳ୍ପ ସମୟ ପରେ ସେମାନଙ୍କ ଅବସ୍ଥା ଖରାପ ହୋଇଯିବ । ସେ ଜଣେ ଅତିଥିଙ୍କୁ କହି ପକାଇଲେ, ''ଏହି ଭୟଙ୍କର ଜିନିଷଟି ପିଅନ୍ତୁ ନାହିଁ ।''

ତା'ପର ଦିନ ସକାଳେ ବାପାଙ୍କ ଅବସ୍ଥା ପୂରା ସୁଧୁରିଗଲା । କିନ୍ତୁ ସେଦିନ ଠାରୁ ସେହି ସୁରେଇରୁ ସେ କେବେ କିଛି ପିଇଲେ ନାହିଁ । ଆଉ, ଆଜି କେଉଁଠି ଭୋଦ୍‌କା ଦେଖିଲେ ବାପାଙ୍କ ଚେହେରା ଫିକା ପଡିଯାଏ ।

ବାପା ସବୁବେଳେ ଏହି କାହାଣୀଟି ଶୁଣାଉଥିଲେ । ଏହା କହିସାରି ସେ କହୁଥିଲେ :''ସେହି ଦିନଠାରୁ ମୁଁ ପିଆପିଇ ଛାଡିଦେଲି ।''




# ବାପା ଲେଖିବା ଶିଖିଲେ

ପିଲାବେଳେ ବାପା ବହୁତ ଜଲଦି ପଢିବା ଶିଖିଯାଇଥିଲେ । ଲୋକେ କହୁଥିଲେ ''ଏଇଟା 'ଅ' ଏଇଟା 'ଆ','' ଆଉ ବାପା ଏହି ସବୁ ଅକ୍ଷରକୁ ଶିଖିଯାଉଥିଲେ । ଏହା ବହୁତ ମଜାଦାର ଥିଲା । ସେ ବହିଟିଏ ପାଇଲେ ତା'କୁ ଠିକ୍ ଭାବରେ ପଢିବା ବଦଳରେ ଚିତ୍ର ଦେଖିବାରେ ବେଶୀ ମନ ଦେଉଥିଲେ । କିନ୍ତୁ ଲେଖିବାରେ ସେ ଟିକିଏ ବି ମନ ଦେଉ ନଥିଲେ । ସେ କଲମଟିକୁ ଠିକ୍ ଭାବରେ ଧରିବାଟା ଶିଖିବାକୁ ଚାହୁଁ ନଥିଲେ । କିନ୍ତୁ ତାକୁ ଭୁଲ ପ୍ରକାରେ ଧରିବାକୁ ବି ସେ ଚାହୁଁ ନଥିଲେ । ସେ ଚାହୁଁଥିଲେ କେବଳ ପଢିବା ପାଇଁ,

ଲେଖିବା ନୁହେଁ । ପଢ଼ିବାଟା ତାଙ୍କ ପାଇଁ ଭାରି ମଜାଦାର ଥିଲା, କିନ୍ତୁ ଲେଖାଲେଖିଟା ବହୁତ ବିରକ୍ତିକର ଥିଲା ।

କିନ୍ତୁ ବାପାଙ୍କ ବାପା, ମା' କହୁଥିଲେ :

"ତୁ ଯଦି ଲେଖିବୁନି, ତେବେ ପଢ଼ିବୁ ବି ନାହିଁ ।"

ସେମାନେ ପୁଣି କହୁଥିଲେ :

"ଆଚ୍ଛା, ଏଥର ଏଇ ଅକ୍ଷରଟି ଲେଖିଲୁ ।"

ସକାଳୁ ସଞ୍ଜ ଯାଏଁ, ବାପା ଏହା ହିଁ ଶୁଣୁଥିଲେ । ଆଉ ପ୍ରତିଦିନ ବିନା ଆଗ୍ରହରେ ଲେଖୁଥିଲେ ।

ତାଙ୍କର ଅକ୍ଷରଗୁଡ଼ିକ ଭୟଙ୍କର ଦିଶୁଥିଲା । ତାହା ବଙ୍କାଟଙ୍କା ଓ ଉପରତଳ ହେଉଥିଲା । ସେ ଅକ୍ଷରଗୁଡ଼ିକୁ ଦେଖିଲେ ବାପା ନିଜେ ବି ଚିଡ଼ି ଯାଉଥିଲେ ।

ସେ ସୁନ୍ଦର ଅକ୍ଷର ଲେଖିପାରୁ ନଥିଲେ । ତେବେ ଲେଖା ଭିତରେ କଲମରୁ ଖସି ପଡ଼ିଥିବା କାଳି ଟୋପାଗୁଡ଼ିକ ବହୁତ ସୁନ୍ଦର ଲାଗୁଥିଲା । ଲେଖା ଭିତରେ ଏଣେ ତେଣେ ଏତେ କାଳି ପଡ଼ୁଥିଲା ଯେ, କେହି ଏତେ କାଳି ପକାଇ ପାରିବନି । ଯଦି ଏପରି କାଳି ପକାଇ ଅକ୍ଷର ଲେଖା ଯାଉଥାନ୍ତା, ତେବେ ବାପାଙ୍କ ଲେଖା ସମସ୍ତଙ୍କଠୁ ଭଲ ହୋଇଥାନ୍ତା ।

ତାଙ୍କର ଗୋଟିଏ ବି ଅକ୍ଷର ସିଧା ନଥିଲା । ସବୁଠି କେବଳ କାଳି ଟୋପା ହିଁ ଦୃଷ୍ଟି ଆକର୍ଷଣ କରୁଥିଲା । ଏଥିପାଇଁ ବାପାଙ୍କୁ ବହୁତ ଗାଳି କରାଯାଉଥିଲା । ସମସ୍ତଙ୍କ ଆଗରେ ଲଜ୍ଜିତ ବି କରାଯାଉଥିଲା । ପ୍ରତିଟି ଅକ୍ଷର ବାରମ୍ବାର ଲେଖିବାକୁ କୁହାଯାଉଥିଲା । କିନ୍ତୁ ସେ ଯେତେ ଅଧିକ ଲେଖୁଥିଲେ, ଲେଖାଗୁଡ଼ିକ ସେତେ ବେଶୀ ଖରାପ ହେଉଥିଲା । ସେଥିରେ ସେତେ ଅଧିକ କାଳିଟୋପା ଦେଖା ଦେଉଥିଲା ।

ସେ ବୁଝିପାରୁ ନଥିଲେ, ତାଙ୍କୁ କାହିଁକି ଏତେ ହଇରାଣ କରାଯାଉଛି । ସେ ଶବ୍ଦ ପଢ଼ିବା ଜାଣିଥିଲେ । ସେ ଗୋଟିଏ ଗୋଟିଏ ଅକ୍ଷର ଲେଖିବା

ବଦଳରେ ସିଧା ଶବ୍ଦ ଲେଖିବାକୁ ଚାହୁଁଥିଲେ । କିନ୍ତୁ ଅନ୍ୟମାନେ କହୁଥିଲେ, ତୁମେ ଅକ୍ଷର ଶିଖିଲେ ହିଁ ଶବ୍ଦ ଲେଖି ପାରିବ । ବାପା ସେ କଥାକୁ ବିଶ୍ୱାସ କରୁ ନଥିଲେ । ଶେଷରେ ସେ ସ୍କୁଲକୁ ଯିବାପରେ ସମସ୍ତେ ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ । ସେ ଯେତେ ଭଲ ପଢି ପାରୁଥିଲେ, ସେତିକି ଖରାପ କିପରି ଲେଖୁଥିଲେ ! ପୂରା ଶ୍ରେଣୀରେ ବାପାଙ୍କ ଲେଖା ସବୁଠୁ ଖରାପ ଥିଲା ।

କେତେ ବର୍ଷ ବିତିଗଲା । ବାପା ବଡ ହେଲେ । ଆଜି ବି ସେ ପଢିବା ପସନ୍ଦ କରନ୍ତି । ତାଙ୍କ ଲେଖା ଏତେ ଖରାପ, କେତେଜଣ ଭାବନ୍ତି, ସେ ଜାଣିଶୁଣି ଲେଖା ଖରାପ କରୁଛନ୍ତି ।

ଥରେ ଥରେ ଲେଖା ପାଇଁ ବାପାଙ୍କୁ ଲଜ୍ଜିତ ହେବାକୁ ପଡେ ।

ଦିନେ ସେ ଡାକଘରକୁ ଯାଇଥିଲେ । ପୋଷ୍ଟମାଷ୍ଟର ତାଙ୍କୁ ପଚାରିଲେ, ''ଆପଣଙ୍କୁ ଲେଖି ଆସେନା ?''

ବାପାଙ୍କୁ ବହୁତ ଖରାପ ଲାଗିଲା ।

''ନିଶ୍ଚୟ ଲେଖିଆସେ ।'' ବାପା କହିଲେ ।

''ଆଚ୍ଛା ଏଇଟା କି ଅକ୍ଷର ?'' ପୋଷ୍ଟମାଷ୍ଟର ପଚାରିଲେ ।

''ଏହା 'ଉ' ।'' ବାପା ଫିସ୍‌ଫିସ୍ କରି କହିଲେ ।

''ଏଇଟା 'ଉ' ? ଏମିତି 'ଉ' କେହି ଲେଖେ ?'' ପୋଷ୍ଟମାଷ୍ଟର ପଚାରିଲେ ।

''ମୁଁ ଲେଖେ ।'' ବାପା ଗୁଣୁଗୁଣୁ ହୋଇ କହିଲେ ।

ବାପାଙ୍କ କଥା ଶୁଣି, ସମସ୍ତେ ହସିଲେ ।

ଏବେ ବାପାଙ୍କର ବହୁତ ଇଚ୍ଛା ହେଉଛି, କେମିତି ତାଙ୍କ ଲେଖା ସୁନ୍ଦର ଓ ପରିଷ୍କାର ହେବ । ସମସ୍ତେ ସହଜରେ ପଢି ପାରିବେ । ପିଲାବେଳେ ଭଲ ହସ୍ତାକ୍ଷର ପାଇଁ ଚେଷ୍ଟା ନ କରିଥିବାରୁ ଏବେ ସେ ପଶ୍ଚାତାପ କରୁଛନ୍ତି । ହେଲେ ଏବେ ତ ବହୁତ ଡେରି ହୋଇଯାଇଛି ! ଭୁଲ ବି ବାପାଙ୍କର !



## ବାପା ବିତ୍ୟାଦାଦାଙ୍କୁ ଏକା ଛାଡିଦେଲେ

ପିଲାଦିନେ ବାପାଙ୍କର ଜଣେ ଭାଇଥିଲେ ଯେ ତାଙ୍କଠୁ ବି ଛୋଟ ଥିଲେ । ତାଙ୍କୁ ଆମେ ବିତ୍ୟାଦାଦା ଡାକୁ । ଏବେ ସେ ଜଣେ ଇଞ୍ଜିନିୟର ଅଛନ୍ତି । ତାଙ୍କ ପୁଅର ନାଁ ବି ସେ 'ବିତ୍ୟା' ରଖିଛନ୍ତି ।

ସେତେବେଳେ ବିତ୍ୟାଦାଦା ଏକଦମ୍ କୁନି ଛୁଆଟିଏ ଥିଲେ । ସେ ନୂଆ ନୂଆରେ ଚାଲିବା ଶିଖୁଥାନ୍ତି । କେବେ ସେ ପାଦରେ ଚାଲିବା ବଦଳରେ ଆଣ୍ଠେଇ ଚାଲିବାକୁ ପସନ୍ଦ କରୁଥିଲେ । ପୁଣି କେବେ ସେ ଚଟାଣ ଉପରେ ହିଁ ବସି ରହୁଥିଲେ । ଏଥିଯୋଗୁଁ ତାଙ୍କୁ କେଉଁଠି ବି ଏକଲା ଛଡା ଯାଉ ନଥିଲା । ସେ ବେଶ୍ ଛୋଟ ଥାନ୍ତି ।

ଦିନେ ବାପା ଓ ଦାଦା ଅଗଣାରେ ଖେଳୁଥିଲେ । କିଛି ସମୟ ପାଇଁ ତାଙ୍କୁ ସେଠାରେ ଏକା ଛାଡି ଦିଆଯାଇଥିଲା । ଖେଳୁଖେଳୁ ସେମାନଙ୍କ ବଲ୍‌ଟି ରାସ୍ତାଆଡକୁ ଗଡିଗଲା । ବାପା ବଲ୍ ପଛରେ ଧାଇଁଲେ । ବିତ୍ୟାଦାଦା ମଧ ଗୁରୁଣ୍ଡି ଗୁରୁଣ୍ଡି ତାଙ୍କ ପଛରେ ଚାଲିଲେ ।

ସେମାନଙ୍କ ଘରେ ପାହାଡ ଉପରେ ଥିଲା । ବଲ୍‌ଟି ପାହାଡରୁ ତଳକୁ ଗଡି ଚାଲିଥାଏ । ବାପା ତା' ପଛରେ ଧାଉଁଥାନ୍ତି । ଦାଦା ବାପାଙ୍କ ପଛେପଛେ ଚାଲିଥାନ୍ତି । ପାହାଡ ତଳେ ଗୋଟିଏ ରାସ୍ତା ଯାଇଥିଲା । ବଲ୍‌ଟି ଗଡିଗଡି ଯାଇ ସେଇ ରାସ୍ତା ଉପରେ ଅଟକିଲା । ବାପା ଶେଷରେ ରାସ୍ତା ଉପରେ ପହଞ୍ଚି ବଲ୍‌ଟିକୁ ଧରିଲେ । ବିତ୍ୟାଦାଦା ବି ସେଠାରେ ପହଞ୍ଚି ବାପାଙ୍କୁ ଧରିଲେ ।

ବଲ୍‌ଟି ଏଇ ତିନି ଜଣଙ୍କ ମଧରେ ସବୁଠୁ ଛୋଟ ଥାଇବି ଟିକଏ ବି ଥକି ନଥିଲା । ବାପା ଅଳ୍ପ ହାଲିଆ ହୋଇ ଯାଇଥିଲେ । ହେଲେ ବିତ୍ୟାଦାଦା ପୂରା ଥକି ଯାଇଥିଲେ । ସେ ସେହି ରାସ୍ତା ଉପରେ ହିଁ ବସିଗଲେ ।

ଏ ସମୟରେ ଦୂରରୁ ମିଳିତ ସ୍ୱରରେ ବହୁତ ଲୋକଙ୍କ ଗୀତ ଶୁଭିଲା । ତା' ପରେ କେତେ ଜଣ ଲୋକ ଘୋଡା ଉପରେ ବସି ଆସୁଥିବା ଦେଖାଗଲା । ସେମାନେ ଘୋଡା ପିଠିରେ ବସି ଆସୁଥାନ୍ତି । ଘୋଡାଗୁଡିକ ଖୁବ୍ ଜୋର୍‌ରେ ଦଉଡି ଆସୁଥାନ୍ତି । ଏହା ସେ ସମୟର ଯୁଦ୍ଧ ପରର କଥା ।

ବାପା ଜାଣିଥିଲେ, ଯୁଦ୍ଧ ସରିଗଲାଣି । ତଥାପି ସେ ବହୁତ ଡରିଗଲେ । ସେ ବଲ୍‌ଟିକୁ ପକାଇ ଦେଲେ; ବିତ୍ୟାଦାଦାଙ୍କୁ ସେଇ ରାସ୍ତା ଉପରେ ଛାଡିଦେଇ ଘର ଆଡକୁ ଦଉଡିଲେ ।

ଆଉ ବିତ୍ୟାଦାଦା ? ସେ ସେଇ ରାସ୍ତା ଉପରେ ,ବସି ରହି ବଲ୍‌ଟି ନେଇ ଖେଳିବାରେ ଲାଗିଲେ । ତାଙ୍କର ଏଇ ସିପାହୀ ବା ଘୋଡାକୁ ଡର ନଥିଲା । ଯେହେତୁ ସେ ଖୁବ୍ ଛୋଟ ଥିଲେ, ତାଙ୍କୁ କୌଣସି ଜିନିଷର ଡର ନଥିଲା । ଘୋଡାସବାର ସିପାହୀମାନେ ତାଙ୍କର ଖୁବ୍ ପାଖକୁ ଆସିଗଲେ । ସେମାନଙ୍କର ସେନାପତି ଗୋଟିଏ ଧଳା ଘୋଡା ଉପରେ ବସିଥିଲେ ।

"ରହିଯାଅ ।" ସେ ଚିତ୍କାର କରି କହିଲେ । ସେ ନିଜ ଘୋଡାରୁ ଓହ୍ଲାଇଲେ ଓ ବିତ୍ୟାଦାଦାଙ୍କୁ ଉଠାଇ ଧରିଲେ । ତାଙ୍କୁ ଅଳ୍ପ ଉପରକୁ ଫିଙ୍ଗିଦେଇ ପୁଣି ଧରିନେଇ ହସି ଉଠିଲେ ।

"କଣ କରୁଛ ?" ସେ ପଚାରିଲେ । ବିତ୍ୟାଦାଦାଙ୍କୁ ଏହା ମଜା ଲାଗୁଥିଲା । ସେ ଖିଲିଖିଲି ହୋଇ ହସି ଉଠିଲେ । ଏ ସମୟରେ ଜେଜେ, ଜେଜେମା' ଓ ବାପା ପାହାଡ ଉପରୁ ଦଉଡି ଆସୁଥିଲେ ।

ଜେଜେ ମା' ପାଟି କରୁଥିଲେ :

"ମୋ ଧନ କୁଆଡେ ଗଲା ?"

ଜେଜେ ପାଟି କରି କହୁଥିଲେ :

"ଓହୋ...ରୁହ... ପାଟିଟା ଟିକେ ବନ୍ଦ କର ।"

ଆଉ ବାପା ସେତେବେଳକୁ ବରଡା ପତର ପରି ଥରୁଥାନ୍ତି ।

"ଇଏ ଆପଣଙ୍କ ଛୁଆ ନା ? ଭା'ରି ଭଲ ପିଲା । ଘୋଡାକୁ ବି ତା'ର ଭୟ ନାହିଁ ।"ସେନାପତି ବିତ୍ୟାଦାଦାଙ୍କୁ ପୁଣି ଥରେ ଉପରକୁ ଧିରେ ଫିଙ୍ଗି ଧରିନେଲେ । ବଲ୍‌ଟି ଦାଦାଙ୍କୁ ଦେଲେ । ତା'ପରେ ବାପାଙ୍କ ଆଡକୁ ଚାହିଁ ଜେଜେଙ୍କୁ କହିଲେ : "ଆପଣଙ୍କ ବଡପୁଅ ହରିଣଠୁ ବି ଜୋର୍‌ରେ ଧାଇଁ ଚାଲିଗଲା ।"

ସମସ୍ତେ ହସି ଉଠିଲେ; ସିପାହୀମାନେ ଚାଲିଗଲେ । ଜେଜେ, ଜେଜେମା', ବାପା ଓ ବିତ୍ୟାଦାଦା ବି ଘରକୁ ଆସିଲେ । ଜେଜେ ବାପାଙ୍କୁ କହିଲେ, "ବଡପୁଅ ହରିଣଠୁ ବି ଜଲ୍‌ଦି ଧାଇଁ ଚାଲିଗଲା । କାହିଁକି ନା, ସେ ଥିଲା ଡରକୁଳା । ଏହା ଲେମୋଁତୋଭଙ୍କ କବିତାର ଏକ ପଂକ୍ତି । ଏଥିପାଇଁ ତୁମକୁ ଲାଜ ଲାଗିବା କଥା ।"

ବାପା ଏଥିରେ ଲଜ୍ଜିତ ହେଲେ ।

ବାପା ଯେବେ ବଡ ହେଲେ, ସେ ଲେମୋଁତୋଭଙ୍କ କବିତା ସବୁ ପଢିଲେ । ଏଇ ପଂକ୍ତିଟି ପଢିବାବେଳେ ତାଙ୍କୁ ଲାଜ ଲାଗୁଥିଲା ।



# ବାପା ଝିଅଙ୍କ ସାଥିରେ ଖେଳିଲେ

ପିଲାବେଳେ ବାପାଙ୍କର ଜଣେ ସାଙ୍ଗ ଥିଲା । ତା ନାଁ ମାଣା । ସେଇ ଝିଅଟି ସାଙ୍ଗରେ ବାପା ସବୁବେଳେ ଖେଳୁଥିଲେ । ସେମାନେ ବାଲିରେ ସୁନ୍ଦର ସୁନ୍ଦର ଘର ତିଆରି କରୁଥିଲେ । ଗୋଟିଏ ଛୋଟ ବନ୍ଧରେ କାଗଜଡଙ୍ଗା ଭସାଉଥିଲେ । ସେମାନେ ବନ୍ଧରୁ ମାଛ ଧରିବାକୁ ବି ଯାଉଥିଲେ । ମାଛ ମିଳୁ ବା ନମିଳୁ ସେମାନଙ୍କୁ ମଜା ଲାଗୁଥିଲା ।

ମାଣା ସହ ଖେଳିବାକୁ ବାପାଙ୍କୁ ଭଲ ଲାଗୁଥିଲା । ସେ ବାପାଙ୍କ ସହ କେବେ ଝଗଡା କରୁ ନଥିଲା; କେବେ ପଥର ଫିଙ୍ଗୁ ନଥିଲା; କେବେ ତାଙ୍କ ଗୋଡ ଛନ୍ଦି ପକାଉ ନଥିଲା । ବାପାଙ୍କର ଅନ୍ୟ ଚିହ୍ନା ପିଲାମାନେ

ମାଶା ପରି ହୋଇଥିଲେ, ବାପା ଭାରି ଖୁସି ହୋଇଥାନ୍ତେ ।

ହେଲେ, ସେମାନେ ପୂରା ଅଲଗା ପ୍ରକାରର ଥିଲେ । ସେମାନେ ବାପାଙ୍କୁ ସବୁବେଳେ ଚିଡାଉଥିଲେ । କାରଣ ବାପା ଜଣେ ଝିଅ ସାଙ୍ଗରେ ଖେଳୁଥିଲେ । ବାପାଙ୍କୁ ଦେଖିଲାମାତ୍ରେ, ପିଲାମାନେ ଚିଡେଇ କହୁଥିଲେ:

*" ସାଶା ଭଲ ପାଏ ମାଶାକୁ !*

*ମାଶା ଭଲ ପାଏ ସାଶାକୁ ! "*

ପୁଣି ସେମାନେ ପଚାରୁଥିଲେ, "ବାହାଘର କେବେ ?" ସେମାନେ ଜାଣିଶୁଣି ବାପାଙ୍କ ସହ ଝିଅପରି କଥା ହେଉଥିଲେ । "ତୁ ଆସିଲୁ କି ଲୋ ? କୋଉଠିକି ଯାଇଥିଲୁ ଲୋ ?"

ସେମାନେ ଭାବୁଥଲେ, ପୁଅ ଝିଅ ଏକାଠି ଖେଳିବା ଭଲ ନୁହେଁ । ଏ ପ୍ରକାରର କଥା, ବାପାଙ୍କୁ ବହୁତ ଖରାପ ଲାଗୁଥିଲା । କେବେ କେବେ ସେ କାନ୍ଦି ପକାଉଥିଲେ । ହେଲେ, ମାଶା ହସି ଦେଉଥିଲା । ସେ କହୁଥିଲା :

"ସେମାନେ ଚିଡାଉଥାନ୍ତୁ, ଯେତେ ଇଚ୍ଛା !"

ଏଥିପାଇଁ ମାଶାକୁ ଚିଡାଇବାରେ ପିଲାଙ୍କୁ ମଜା ମିଳୁ ନଥିଲା । ତେଣୁ ପିଲାମାନେ କେବଳ ବାପାଙ୍କୁ ହିଁ ଚିଡାଉଥିଲେ । ମାଶାକୁ କିଛି କହୁ ନଥିଲେ ।

ଦିନେ ତାଙ୍କ ସାହିକୁ ବଡ଼ କୁକୁରଟିଏ ପଶି ଆସିଲା । ଜଣେ ପିଲା ପାଟି କରି କହିଲା "ଏଇଟା ପାଗଳ କୁକୁର !"

ଏହା ଶୁଣି ସାହସୀ ପିଲାମାନେ ବି ଡରି ଧାଇଁଲେ । ହେଲେ ବାପା ଭୟରେ ସେଇଠି ହିଁ ଠିଆ ହୋଇ ରହିଲେ । କୁକୁରଟି ବାପାଙ୍କର ଖୁବ୍ ପାଖରେ ପହଞ୍ଚି ଯାଇଥିଲା । ହଠାତ୍ ମାଶା ଦଉଡି ଦଉଡି ବାପାଙ୍କ ପାଖକୁ ଆସିଲା ଓ ଧରିଥିବା ବାଡି ଦେଖାଇ କୁକୁରକୁ ତଡିବାରେ ଲାଗିଲା ।

"ଯା', ପଳା ଏଠୁ !" ସେ ପାଟି କଲା ।

କୁକୁରଟି ଲାଙ୍ଗୁଡ ଜାକି ଡରରେ ଧାଇଁଲା । ସେତେବେଳେ ସମସ୍ତେ

ଜାଣିଲେ, କୁକୁରଟି ପାଗଳ ନୁହଁ । ସେ ଭୁଲରେ ଏହି ଇଲାକାକୁ ଆସି ଯାଇଥିଲା । ସବୁ କୁକୁରଙ୍କୁ ନିଜର ଓ ପର ଜାଗା ଜଣାଥାଏ । କିନ୍ତୁ ଅଜଣା ଇଲାକାରେ ପଶିଗଲେ ଲୋକେ ତାକୁ ଏପରି ପାଗଳ ବୋଲି ସନ୍ଦେହ କରନ୍ତି ।

ପିଲାଏ ଯେତେବେଳେ ଦେଖିଲେ, କୁକୁର ପାଗଳ ନୁହେଁ, ସେମାନେ ପଥର, ବାଡି ନେଇ ତା' ପଛରେ ଧାଇଁଲେ । ଏଥିପାଇଁ ବେଶୀ ସାହସ ଦରକାର ନାହିଁ । କୁକୁରକୁ ବି ଏହା ଜଣାଥିଲା । ଯେମିତି ସେ ସଡକ ଉପରେ ପହଞ୍ଚିଗଲା, ହଠାତ୍ ବୁଲିପଡି ଘାଉଁ ଘାଉଁ ହେଲା ।

ପିଲାମାନେ ପୁଣି ଡରି ସାହି ଭିତରକୁ ଧାଇଁଲେ । ସେମାନେ ଆସି ବାପାଙ୍କୁ ଚିଡାଇଲେ । ''ଡରୁଆ ବିଲେଇ କୋଉଠିକାର !'' ସେମାନେ କହିଲେ । ''ତୁ ଏତେ ଡରିଥିଲୁ ଯେ ଧାଇଁ ବି ପାରିଲୁ ନି ?'' ହେଲେ, ବାପା କହିଲେ : ''ଖାଲି ମୁଁ ଏକା ତ ଡରି ନଥିଲି ! ତୁମେ ସବୁ ବି ଡରି ଥିଲ । ଏକା ମାଶା ହିଁ ଡରି ନଥିଲା ।''

ଏ କଥା ଶୁଣି ସମସ୍ତେ ଲାଜରେ ଚୁପ୍ ହୋଇଗଲେ । ସେମାନଙ୍କ ପାଖରେ କିଛି ଉତ୍ତର ନଥିଲା । ତେବେ, ମାଶା କହିଲା :

''ଏହା ଠିକ୍ ନୁହେଁ । ମୁଁ ବି ଡରି ଯାଇଥିଲି ''

ଏଥର ସମସ୍ତେ ହସି ଉଠିଲେ । ସେମାନେ ବାପାଙ୍କୁ ଚିଡାଇବା ବନ୍ଦ କରିଦେଲେ । ବାପା ଓ ମାଶା ଦୁହେଁ ଅଧିକ ଘନିଷ୍ଠ ସାଙ୍ଗ ହୋଇ ରହିଲେ ।



# ବାପା ବଳ କଷିଲେ

ପିଲାବେଳେ ବାପାଙ୍କର ବହୁତ ସାଙ୍ଗସାଥି ଥିଲେ । ସେମାନେ ଏକାଠି ଖେଳୁଥିଲେ । ଥରେ ଥରେ ସେମାନଙ୍କ ମଧ୍ୟରେ ଝଗଡା ଓ ମାରପିଟ୍ ବି ହେଉଥିଲା । ତା'ପରେ ସେମାନେ ପୁଣି ମିଳିମିଶି ଖେଳୁଥିଲେ । ତେବେ ଭୋଭା ନଜାରୋଭ କେବେ କାହା ସହ ଝଗଡା କରୁ ନଥିଲା । ତା'ର ସୁନ୍ଦର ସ୍ୱାସ୍ଥ୍ୟ ଥିଲା । ତା' ବାପା ଫଉଜରେ ମିଶିଥିଲେ । ସେ ତା' ବାପାଙ୍କ ସେନାପତି ବୁଦ୍ୟୋନୀଙ୍କ ବୀରତ୍ୱ ବିଷୟରେ କହିବାକୁ ଭଲ ପାଉଥିଲା । ବୁଦ୍ୟୋନୀ କାହାରିକୁ ଡରୁ ନଥିଲେ । ଭୋଭାକୁ ବୁଦ୍ୟୋନୀଙ୍କ ଘୋଡା ଓ ଖଣ୍ଡା ବିଷୟରେ ବହୁତ କିଛି

ଜଣାଥିଲା । ସେ ସବୁବେଳେ କହୁଥିଲା, ''ମୁଁ ବଡ ହେଲେ, ବୁଦ୍ଧୋନୀଙ୍କ ପରି ବୀରହେବି ।''

ବାପା ଭୋଭା ପାଖକୁ ଯିବାକୁ ଭଲ ପାଉଥିଲେ । ଭୋଭାର ଘରେ ସେ ବିବିଧ ରକମର ଧାରଣା ପାଉଥିଲେ । ଘରେ ସେ ସବୁବେଳେ କାମରେ ଲାଗି ରହୁଥିଲା । ଦୋକାନରୁ ରୁଟି ଆଣିବା, ଜାଳକାଠ କାଟିବା, ଘରେ ଝାଡୁ କରିବା, ବାସନ ଧୋଇବା ଏସବୁ କାମ ସେ କରୁଥିଲା । ବାପା ଦେଖୁଥିଲେ, ଭୋଭାକୁ ଘରେ ସମସ୍ତେ ଭାରି ଆଦର କରୁଛନ୍ତି । ଘରର ଜଣେ ବଡ ସଦସ୍ୟ ପରି ତା'କୁ ବ୍ୟବହାର ଦେଖାଉଛନ୍ତି ।

''ଭୋଭା, ରବିବାର ଦିନ ଆମ ଘରେ ଲଞ୍ଚ୍ ଖାଇବା ପାଇଁ କାହାକୁ ଡାକିବା ?''

''ତୁମ ହିସାବରେ ବସନ୍ତ ଋତୁ ପାଇଁ ଆମର ଜାଳେଣି କାଠ ଯଥେଷ୍ଟ ହେବ ତ ?'' ଭୋଭାର ବାପା ଭୋଭା ସହ ଏମିତି କଥା ହେଉଥିଲେ ।

ଭୋଭାର କେହି ସାଙ୍ଗ ଘରକୁ ଆସିଲେ, ସେମାନେ ଏକାଠି ବସି ତାଙ୍କୁ ଭଲ ଜିନିଷ ଖାଇବାକୁ ଦେଉଥିଲେ । ସମସ୍ତେ ଏକାଠି ଖେଳୁଥିଲେ । ବାପାଙ୍କର ଦୁଃଖ ଥିଲା, ତାଙ୍କ ଘର ଭୋଭାର ଘର ପରି ମଜାଦାର ନୁହଁ । ବାପା ଓ ଭୋଭା ଦୁହେଁ ଅନ୍ତରଙ୍ଗ ସାଙ୍ଗ ଥିଲେ । ହେଲେ, ସେ ବୁଝି ପାରୁ ନଥିଲେ, ଭୋଭା କାହିଁକି ଲଢିବାକୁ ଚାହେଁନି ? ବାପା, ତାକୁ ପଚାରିଲେ :

''ତୁ ଲଢିବାକୁ ଡରୁ ?''

ଭୋଭା କହିଲା :

''ନିଜ ଦଳ ବିରୁଦ୍ଧରେ ଲଢିଲେ କ'ଣ ଲାଭ ହେବ ?''

'ସବୁଠୁ ବଳବାନ୍ କିଏ' - ଏକଥା ନେଇ ଥରେ ପିଲାଙ୍କ ଭିତରେ ଆଲୋଚନା ଚାଲିଥିଲା ।

ଜଣେ ପିଲା କହିଲା । ''ମୁଁ ମୋ'ଠୁ ବଡ ପିଲାଙ୍କୁ ବି ଡରେନି । ତୁମ ସମସ୍ତଙ୍କୁ ମୁଁ ପିଲାଙ୍କୁ ଟେକିଲା ପରି ଉଠାଇ ଫିଙ୍ଗି ଦେଇପାରିବି ।''

ଦ୍ୱିତୀୟ ପିଲା କହିଲା ; "ମୁଁ ଏତେ ବଳବାନ୍ ଯେ ମୁଁ ନିଜେ ବି ବିଶ୍ୱାସ କରିପାରୁନି । ବିଶେଷ କରି, ମୋର ବାଁ ହାତ - ଏହା ତ ପଥର ପରି ଟାଣ ଅଟେ ।"

ତୃତୀୟ ପିଲା କହିଲା : "ଯଦି ତୁମେ ସତରେ ମୋର ବଳ ଦେଖିବାକୁ ଚାହଁ, ତେବେ ତମକୁ ମୋତେ ରଗାଇବାକୁ ହେବ । ଆଉ, ତା'ପରେ ମୋଠୁ ଦୂରରେ ରହିବାଟା ହିଁ ଭଲ । ମୁଁ ଯାହା କରିବି, ସେଥିପାଇଁ ପରେ ମୋତେ କେହି ଦାୟୀ କରିବନି ।"

ବାପା କହିଲେ :

"ତୁମମାନଙ୍କ ସହ ଯୁକ୍ତି କରି କିଛି ଲାଭ ନାହିଁ । ମୁଁ ଜାଣେ, ସମସ୍ତଙ୍କଠୁ ମୁଁ ବେଶୀ ବଳବାନ୍ ।"

ସମସ୍ତେ ନିଜ ନିଜ ବାହାଦୁରୀ ଦେଖେଇବାକୁ ଯାଇ କହିବାରେ ଲାଗିଲେ । କିନ୍ତୁ ଭୋଭା ନଙ୍କାରୋଭ୍ ଚୁପ୍ ଥିଲା ।

ଜଣେ ପିଲା କହିଲା :

"ମୁଁ କହିବି - ଚାଲ କୁସ୍ତି କରିବା, ଯିଏ ଜିତିବ, ସେ ହିଁ ସବୁଠୁଁ ବେଶୀ ବଳବାନ୍ ଜଣାପଡିବ ।"

ସମସ୍ତେ ପ୍ରସ୍ତୁତ ହୋଇଗଲେ । କୁସ୍ତି ଲଢିବା ଆରମ୍ଭ କରିଦେଲେ । ସମସ୍ତେ ଚାହୁଁଥିଲେ ଭୋଭା ସହ ଲଢିବା ପାଇଁ । ସେ କେବେ ଲଢୁ ନଥିଲା । ତେଣୁ, ସମସ୍ତେ ଭାବୁଥିଲେ ଭୋଭା ହିଁ ସବୁଠୁ ଦୁର୍ବଳ ।

ଆରମ୍ଭରେ ଭୋଭା ଲଢିବାକୁ ଚାହୁଁ ନଥିଲା । କିନ୍ତୁ ଯେତେବେଳେ ସେହି ପିଲାଟି ତାକୁ ମାଡି ଧରିଲା, ଯା'ର ବାଁ ହାତ ଯଥେଷ୍ଟ ଶକ୍ତ ଥିଲା, ଭୋଭା ରାଗିଗଲା ଓ ଅଳ୍ପ କେତେଟା ସେକେଣ୍ଡରେ ତାକୁ ତଳେ ଗଡାଇ ଦେଲା । ଏହାପରେ ଯେଉଁ ପିଲାଟି ସମସ୍ତଙ୍କୁ ଛୁଆଙ୍କ ପରି ଉଠାଇ ଫିଙ୍ଗିଦେବ କହୁଥିଲା, ସେ ନିଜକୁ ଚିତ୍‌ପଟାଙ୍ଗ୍ ହୋଇ ପଡିଥିବା ଦେଖିଲା । ଏହାପରେ

ତୃତୀୟ ପିଲାଟି, ଯେ ରାଗିଗଲେ ବଳବାନ୍ ହେଉଥିଲା, ସେ ଚିତ୍କାର କରି 'ଏବେ ମୁଁ ରାଗି ନାହିଁ 'କହିବାରେ ଲାଗିଲା । ଶେଷରେ ଭୋଭା ବାପାଙ୍କୁ ବି ଚିତ୍ କରିଦେଲା । ମାତ୍ର ସେ ଦୁହେଁ ଅନ୍ତରଙ୍ଗ ସାଙ୍ଗ ଥିବାରୁ, ଭୋଭା ବାପାଙ୍କୁ ହରାଇବା କଷ୍ଟ ଥିଲା ପରି ଅଭିନୟ କରିଥିଲା ।

"ଭୋଭା, ତୁ ତ ସମସ୍ତଙ୍କଠୁ ବଳବାନ୍ । ତୁ କାହିଁକି କିଛି କହୁ ନଥିଲୁ ?" ପିଲାମାନେ ପଚାରିଲେ ।

ଭୋଭା ହସିଲା ଓ କହିଲା :

"ନିଜେ ନିଜର ବଡେଇ କରି କି' ଲାଭ ?"

ପିଲାଙ୍କର ଆଉ କିଛି କହିବାର ନଥିଲା । କିନ୍ତୁ ସେମାନେ ନିଜ ବଳକୁ ନେଇ ଶୁଖିଲା ଭାଷଣ ଦେବା ଛାଡି ଦେଲେ । ସେମାନେ ଭୋଭାକୁ ଅଧିକ ଭଲ ପାଇଲେ ।

କେତେ ବର୍ଷ ବିତିଗଲା । ବାପା ବଡ ହୋଇଗଲେ । ସେ ଅନ୍ୟ ଏକ ସହରକୁ ଆସିଗଲେ । ଭୋଭା କେଉଁଠି ରହୁଛି ତାକୁ ଜଣାନାହିଁ । କିନ୍ତୁ ତାଙ୍କର ବିଶ୍ୱାସ ଅଛି ଯେ ଭୋଭା ନିଶ୍ଚୟ ଜଣେ ଭଲ ଲୋକ ହୋଇଥିବ ।



# ବାପା ସ୍କୁଲକୁ ଗଲେ

ପିଲା ଥିଲାବେଳେ ବାପା ସବୁବେଳେ ବେମାର ପଡୁଥିଲେ । ତାଙ୍କୁ କେବେ ଶର୍ଦ୍ଦି ହେବ ତ କେବେ କାନପୀଡା, ପୁଣି କେବେ ଶୁଖିଲା କାଶ । ପ୍ରତିଥର ବେମାରୀ ପରେ ତାଙ୍କ ଦେହ ଏତେ ଦୁର୍ବଳ ହୋଇଯାଉଥିଲା ଯେ, ସେ ପୁଣି ବେମାର ପଡିବାକୁ ତିଆର ହୋଇଯାଉଥିଲେ ।

ବାପା ସ୍କୁଲରେ ଭର୍ତ୍ତି ହେବାର ସମୟ ଆସିଲା । ସେତେବେଳକୁ ବାପା ବାରମ୍ବାର ବେମାର ପଡିଲେ । ଶେଷକୁ ସେ ସୁସ୍ଥ ହେଲେ । ପ୍ରଥମ ଥର ପାଇଁ

ସେ ସ୍କୁଲ ଗଲେ । ସେ ଜାଣିଲେ, ଅନ୍ୟ ସବୁ ପିଲା ବେଶ୍ ଆଗରୁ ପଢା ଆରମ୍ଭ କରିସାରିଛନ୍ତି । ସେମାନେ ପରସ୍ପରକୁ ଓ ଶିକ୍ଷୟତ୍ରୀଙ୍କୁ ବି ଜାଣିଥିଲେ । କିନ୍ତୁ ବାପାଙ୍କୁ କେହି ବି ଜାଣି ନଥିଲେ । ସମସ୍ତେ ମୁହଁ ବୁଲାଇ ତାଙ୍କୁ ଅନାଉଥାନ୍ତି । ଏହା ତାଙ୍କୁ ଭାରି ଅଡୁଆ ଲାଗୁଥାଏ । ଏହା ସାଙ୍ଗକୁ କିଛି ପିଲା ପୁଣି ଜିଭ ଦେଖାଇ ବାପାଙ୍କୁ ଖତେଇ ହେଉଥିଲେ ।

ଜଣେ ପିଲା ଜାଣି କରି ବାପାଙ୍କୁ ଗୋଡରେ ଛନ୍ଦି ଦେଲା । ବାପା ତଳେ ପଡିଗଲେ । କିନ୍ତୁ ସେ କାନ୍ଦିଲେ ନାହିଁ । ସେ ସିଧା ଛିଡା ହୋଇଗଲେ ଓ ସେହି ପିଲାକୁ ଓଲଟା ଧକ୍କାଏ ଦେଲେ । ସେ ପିଲାଟି ତଳେ ପଡିଗଲା । ଏଥର ସେ ବି ଉଠିଲା, ଠିଆହେଲା ଓ ବାପାଙ୍କୁ ଧକ୍କାଟାଏ ପକାଇଲା । ବାପା ପୁଣି ଗଡି ପଡିଲେ । କିନ୍ତୁ ଏଥର ବି ସେ କାନ୍ଦିଲେ ନାହିଁ । ସେ ପିଲାଟିକୁ ପୁଣି ଧକ୍କାଏ ଦେଲେ । ସେ ଦିନଟାଯାକ ଦୁହେଁ ଦୁହିଁଙ୍କୁ ଧକ୍କା ଦେବାରେ ଲାଗିଥିଲେ । ସ୍କୁଲ ଘଣ୍ଟି ବାଜିବା ଯାଏଁ ଏହା ଚାଲିଥିଲା । ପିଲାଏ ଶ୍ରେଣୀକୁ ଯାଇ ନିଜ ଜାଗାରେ ବସିଲେ । ବାପାଙ୍କୁ ଜଣା ନଥିଲା ସେ କେଉଁଠି ବସିବେ । ଶିକ୍ଷୟତ୍ରୀ ତାଙ୍କୁ ଜଣେ ଝିଅ ପାଖରେ ବସିବା ପାଇଁ କହିଲେ । ସମସ୍ତେ ହସିବାରେ ଲାଗିଲେ । ପାଖରେ ବସିଥିବା ସେହି ଝିଅଟି ବି ଏହା ଦେଖି ହସିଲା ।

ବାପାଙ୍କୁ କାନ୍ଦ ମାଡିଲା । କିନ୍ତୁ ହଠାତ୍ ଏହା ତାଙ୍କୁ ମଜାଳିଆ ଲାଗିଲା ଓ ସେ ହସି ପକାଇଲେ । ଏହା ଦେଖି ଶିକ୍ଷୟତ୍ରୀ ବସିଲେ ଓ କହିଲେ ''ସାବାସ୍ ! ମୁଁ ତ ଡରି ଯାଇଥିଲି ଯେ ତୁମେ ଏପରି କାନ୍ଦିବାରେ ଲାଗିବ ।''

''ମୋର ବି ସେହି ଡର ଥିଲା,'' ବାପା କହିଲେ । ଏହା ଶୁଣି ସମସ୍ତେ ପୁଣି ହସିଲେ ।

''ଆଚ୍ଛା, ପିଲାମାନେ, ମୁଁ ଚାହୁଁଛି - ତୁମେ ଏହି କଥାଟିକୁ ମନେ ରଖିବ । ତୁମକୁ ଯେବେ ବି କାନ୍ଦ ଲାଗିବ, ତୁମେ ହସିବାକୁ ଚେଷ୍ଟା କରିବା ଉଚିତ୍ । ସାରା ଜୀବନ ପାଇଁ ଏହା ତୁମ ପାଇଁ ଏକ ଶିକ୍ଷା । ଆଚ୍ଛା, ଏଥର ଆମେ ଆଜିର ପାଠ ଆରମ୍ଭ କରିବା ।

ସେହି ପ୍ରଥମ ଦିନ ହିଁ ବପେ ଜାଣି ପାରିଲେଯେ, ପଢାପଢ଼ିରେ ସେ ତାଙ୍କ ଶ୍ରେଣୀରେ ସବୁଠୁ ଭଲ । ସେ ଆହୁରି ଜାଣିଲେ ଯେ, ତାଙ୍କ ଲେଖା ଅନ୍ୟ ସମସ୍ତଙ୍କ ଲେଖାଠାରୁ ଖରାପ । କିନ୍ତୁ ସମସ୍ତେ ଜାଣିଲେ ଯେ ପଢ଼ା ସମୟ ସାରା କେବଳ ବାପା ହିଁ ଅନ୍ୟ ସମସ୍ତଙ୍କଠୁ ବେଶୀ କଥା କହନ୍ତି । ଶିକ୍ଷିୟତ୍ରୀ ଏଥର ତାଙ୍କୁ ଆଙ୍ଗୁଠି ଦେଖାଇ ଚୁପ୍ କରାଇଲେ ।

ସେ ବହୁତ ଭଲ ଶିକ୍ଷୟିତ୍ରୀ ଥିଲେ । ସେ କଡା ଥିଲେ, କିନ୍ତୁ ବହୁତ ସେହ୍ନୀ ବି ଥିଲେ । ତାଙ୍କ ପଢ଼ା ବହୁତ ମଜାଦାର ଥିଲା, ତାଙ୍କ ଉପଦେଶକୁ ବାପା ଜୀବନସାରା ମନେ ରଖିଥିଲେ । ସ୍କୁଲ୍‌ରେ ଏହା ବାପାଙ୍କର ପ୍ରଥବ ଦିନ ଥିଲା ସତ । ଆଗକୁ ସେ ଆହୁରି ଅନେକ ଦିନ ବିତାଇଲେ । ସ୍କୁଲ୍‌ରେ ବାପାଙ୍କର ଅନେକ ମଜାଦାର, ଓ ଦୁଃଖଭରା, ଭଲ ଓ ଖରାପ ଘଟଣା ଘଟିଲା, । କିନ୍ତୁ ସେସବୁ କଥା ଅଲଗା ଥିଲା ।



# ବାପା ସବୁବେଳେ ଡେରିରେ ଆସୁଥିଲେ

ପିଲା ଥିଲାବେଳେ ସବୁ ପିଲାଙ୍କ ପରି ବାପା ବି ସ୍କୁଲରେ ଭର୍ତ୍ତି ହେଲେ । ସ୍କୁଲ ଘଣ୍ଟି ବାଜିବା ଆଗରୁ ସବୁପିଲା ସ୍କୁଲକୁ ଚାଲି ଆସୁଥିଲେ । କିନ୍ତୁ ବାପା ସବୁବେଳେ ଡେରିରେ ଆସୁଥିଲେ । ବେଳେବେଳେ ତ ସେ ଏତେ ଡେରିରେ ଆସୁଥିଲେ ଯେ, ଦ୍ୱିତୀୟ ଘଣ୍ଟା ବାଜିବା ବେଳକୁ ବି ସେ ସ୍କୁଲରେ ପହଞ୍ଚି ପାରୁ ନଥିଲେ । ଶିକ୍ଷୟିତ୍ରୀଙ୍କୁ ଏଥିରେ ବହୁତ ଅସୁବିଧା ହେଲା । ସେ କହିଲେ, ଆଗରୁ ମୁଁ ଏମିତି ପିଲା କେବେ ବି ଦେଖିନାହିଁ । ସ୍କୁଲର ଅଧ୍ୟକ୍ଷ କହିଲେ, ଆଉ କୌଣସି ସ୍କୁଲରେ ବି ଏମିତି ପିଲା ନଥିବେ ।

''ଇଏ ସବୁଦିନ ଡେରିରେ ହିଁ ଆସୁଛି,'' ଅଧକ୍ଷ କହିଲେ । ''ତା' ମା' ବାପା କହୁଛନ୍ତି, ସେମାନେ ଏ ଦିଗରେ କିଛି କରି ପାରୁନାହାନ୍ତି । ମୁଁ ସେମାନଙ୍କ ସହ ଦୁଇଥର କଥାବାର୍ତ୍ତା କରି ସାରିଲିଣି ।''

ଏହା ବି ସତ ଥିଲା । ବାପାଙ୍କ ମା' ବାପା ଏଥିରେ କିଛି ବି କରି ପାରୁନଥିଲେ । ପ୍ରତି ସନ୍ଧ୍ୟାରେ ଏହି ଏକା ଅଧ୍ୟାୟ ଚାଲୁଥିଲା ।

''ତୁ ତୋ ଘର ପାଠ ସାରିଲୁଣି ? '' ଜେଜେମା ପଚାରିବେ ।

''ଆଉ ଏକ ମିନଟ୍ ଅପେକ୍ଷା କର ।'' ବାପା କହିବେ ।

''ଏହି ବହିଟି ରଖ । ତୋ ପଢା ଜଲଦି ଆରମ୍ଭ କର ।'' ଜେଜେ କହିବେ ।

ବାପା ସେହି ବହିଟିକୁ ସାରିଦେଇ ନୂଆଟିଏ ପଢିବା ଆରମ୍ଭ କରିଦେବେ । ନିଜର ନୂଆ କାମ ଆରମ୍ଭ କରିବା ପଛରେ ତା'ଠୁ ଅଧିକା ମନଛୁଆଁ ବହିଟିକୁ ନ ଛାଡିବାର ଯୋଜନା ରହୁଥିଲା ।

''ସେ ବହିଟିକୁ ରଖ ।''

''ବାସ୍, ବାସ୍ ଏକ ସେକେଣ୍ଡ ...''

''ସେ ବହିକୁ ରଖ ।''

''ବାସ୍ ... ଆଉ ସେକେଣ୍ଡଟିଏ ...''

ଶେଷକୁ ଜେଜେ ଓ ଜେଜେମା'ଙ୍କ ଧୈର୍ଯ୍ୟ ଅଣ୍ଟିବନି । ସେମାନେ ବାପାଙ୍କ ହାତରୁ ବହିଟିକୁ ଛଡାଇ ନେଉଥିଲେ ।

''ତୁ ଏକଦମ୍ ଚାରିପାଞ୍ଚିରୁ ଯିବୁ ।'' ସେମାନେ ଧମକାଇ କହୁଥିଲେ ।

ଏହା ବାପାଙ୍କୁ ବହୁତ ଖରାପ ଲାଗୁଥିଲା । ସେ କାନ୍ଦିବା ଓ ଚିଲ୍ଲାଇବା ଆରମ୍ଭ କରି ଦେଉଥିଲେ ଓ ନିଜ ବହିଟି ମାଗୁଥିଲେ । ସେ ଜିଦ୍ ଧରୁଥିଲେ ଯେ, ମତେ ମୋ ବହିଟି ନ ଫେରାଇଲେ, ମୁଁ ଘରପାଠ ଆରମ୍ଭ କରିବି ନାହିଁ ।

ଏମିତିରେ ହିଁ ସନ୍ଧ୍ୟାବେଳଟି ଗଡିଯାଏ । ଶେଷକୁ ସେ ଯେତେବେଳେ ନିଜ କାମ କରିବାକୁ ବସିବେ, ତାଙ୍କୁ ନିଦ ମାଡୁଥିଲା । ତାଙ୍କ ମା' ବାପା ତାଙ୍କୁ

ଉଠାଇ ଦେଉଥିଲେ । ସେ ପୁଣି ଶୋଇ ପଡୁଥିଲେ । ଏପରି ସେ ନିଜ କାମକୁ କୁନ୍ଥାଇ କୁନ୍ଥାଇ କରୁଥିଲେ । ତାଙ୍କ କାମ ସରିଲାବେଳକୁ ବେଶ୍ ଡେରି ହୋଇ ଯାଉଥିଲା । ଢେଙ୍କେମା' ଢେଙ୍କେ ବି ଥକି ଶୋଇ ପଡୁଥିଲେ ।

ସକାଳୁ ଦ୍ୱିତୀୟ ପର୍ବ ଆରମ୍ଭ ହେଉଥିଲା ।

ଢେଙ୍କେ ମା' ଡାକିବେ, "ଉଠ୍ ...ଉଠ୍ ...।"

"ଏକ ସେକେଣ୍ଡ୍ ..." ବାପା କୁନ୍ଥେଇ କରି କହିବେ ।

"ଉଠ୍ !" ଢେଙ୍କେ ଚିଲେଇବେ । ତୋର ଡେରି ହୋଇଗଲାଣି ।"

ସମସ୍ତେ ଜାଣନ୍ତି ଯେ ରାତିରେ ଯଦି କିଏ ଡେରିରେ ଶୋଇଥିବେ, ତେବେ ସକାଳୁ ଉଠିବା କେତେ କଷ୍ଟର କଥା । ଯେତେକ ମିଠା-ମିଠା ସ୍ୱପ୍ନ ସବୁ ବଡି ଭୋର ବେଳକୁ ଦେଖିବାକୁ ମିଳେ - ବିଶେଷ କରି ଯଦି ସ୍କୁଲ ଯିବାକୁ ଅଛି ।

ବାପା ମୁହଁକୁ ଫୁଲାଇ, ଗମ୍ଭୀର ହୋଇ, ଟଳମଳ ଅବସ୍ଥାରେ ଜାମାପଟା ପିନ୍ଧି, ହାତ ମୁହଁ ଧୋଇ, ଜଳଖିଆ ସାରି ଓ ଯେଣୁ ତେଣୁ ପ୍ରକାରେ ବହିତକ ଏକାଠି କରି ନିଅନ୍ତି । ଏ ଭିତରେ ସମୟ ଖୁବ୍ ବେଗରେ ବିତି ଯାଇଥାଏ । ଏହାପରେ ସେ ଘରୁ ବାହାରି ଯାଆନ୍ତି । ରାସ୍ତାରେ ଆଖିରେ ପଡୁଥିବା ପ୍ରତ୍ୟେକ ଘଡିକୁ ଡରରେ ଦେଖି ଦେଖି ସେ ସ୍କୁଲକୁ ଯାଆନ୍ତି ।

ଧଇଁସଇଁ ହୋଇ ସେ ଯେତେବେଳେ ଶ୍ରେଣୀରେ ପଶୁଥିଲେ, ଶ୍ରେଣୀଯାକର ପିଲା ହସି ହସି ବେଦମ୍ ହୋଇ ଯାଉଥିଲେ । ଶିକ୍ଷୟିତ୍ରୀ ବି ହସି ପକାନ୍ତି । "ଆସିଗଲେ ଆମର ଡେରିକଲା ବାବୁ !" ସେ କହୁଥିଲେ । ସବୁଥର ଏପରି ଶୁଣିଶୁଣି ବାପାଙ୍କୁ ବହୁତ ଖରାପ ଲାଗୁଥିଲା ।

ପିଲାମାନେ ସ୍କୁଲର ପ୍ରାଚୀର ପତ୍ରିକାରେ ବାପାଙ୍କର ଛବି ଆଙ୍କି ଲଗାଇଦେଲେ । ଛବିଟିରେ ସେ ନିଶ୍ଚିନ୍ତ ଭାବେ ଶୋଇଥିଲେ ଓ ତାଙ୍କ ମା' ବାପା ଦୁଇଟି ବଡ ବାଲ୍‌ଟିରେ ତାଙ୍କ ଉପରେ ପାଣି ଢାଳୁଥିଲେ । ବଡ ଆଲାର୍ମ୍ ଘଡିଟିଏ ବାପାଙ୍କ କାନକୁ ଧରି ଭିଡୁଥିଲା । ଆର କାନ ପାଖରେ ଜଣେ ପିଲା

ବିଗୁଲ୍ ବଜାଉଥିଲା । ଛବି ତଳେ ଲେଖାଥିଲା "ଲୋରୀ" । ଏହାକୁ ଦେଖି ବାପା ରାଗିଗଲେ । କିନ୍ତୁ ତଥାପି ତାଙ୍କ ଡେରି ହେବାଟା ବନ୍ଦ ହୋଇ ନଥିଲା ।

ଯେହେତୁ ଘର ପାଠଗୁଡିକୁ ବାପା ସବୁବେଳେ ଶେଷ ମୁହୂର୍ତ୍ତରେ କରୁଥିଲେ, ତେଣୁ ସେ କେବେ ଭଲଭାବେ କରି ପାରୁ ନଥିଲେ । ସ୍କୁଲରେ ପହଞ୍ଚିଲା ବେଳକୁ ଯଥେଷ୍ଟ ଡେରି ହୋଇ ଯାଉଥିଲା । ତେଣୁ ଶିକ୍ଷୟିତ୍ରୀ ଯାହା ନୂଆ ବିଷୟରେ କହୁଥିଲେ, ତାକୁ ସେ ସବୁବେଳେ ଶୁଣି ପାରୁ ନଥିଲେ । ଏଥିଯୋଗୁଁ ଶ୍ରେଣୀଯାକର ପିଲା ଯାହା କରିବାକୁ ଯାଉଥିଲେ, ବାପା ତାହା ବୁଝି ପାରୁ ନଥିଲେ ।

ଏହାଛଡା ସେ ଲଗାତାର ଡେରିରେ ଉଠୁଥିଲେ, ଡେରିରେ ପହଞ୍ଚୁଥିଲେ, ଧାଉଁଥିଲେ ଓ ହଡବଡ ହେଉଥିଲେ । ଏସବୁ ତାଙ୍କ ପାଇଁ ବହୁତ ଅସୁବିଧା କରୁଥିଲା । କିନ୍ତୁ ଏ ସବୁ ସତ୍ତ୍ୱେ ସେ ସବୁବେଳେ ଡେରି ହିଁ କରୁଥିଲେ ।

ମୁଁ ଏବେ ତୁମକୁ ବତାଉଛି ବାପାଙ୍କ ମା' ବାପା ତାଙ୍କର ଡେରି କରିବା ଅଭ୍ୟାସକୁ ଶେଷରେ କିପରି ବଦଳାଇଲେ ।

ମୁଁ ଏବେ ବତାଇବାକୁ ଯାଉଛି କିପରି ଶିକ୍ଷୟିତ୍ରୀ ଓ ଅନ୍ୟ ପିଲାମାନେ ବାପାଙ୍କୁ ଲଗାତାର ହସି ଉଡାଇଥିଲେ ଓ ଶେଷରେ ବାପା ଦିନେ କିପରି ସବୁଠୁ ଆଗ ଯାଇ ସ୍କୁଲରେ ପହଞ୍ଚିଲେ । ଏହା ପରଠୁ ସେ କେବେ ବି ଆଉ ଡେରି କଲେ ନାହିଁ ।

କିନ୍ତୁ ମୁଁ ମିଛ କହିବାକୁ ଚାହୁଁନାହିଁ ।

ବାପା ତ ସବୁବେଳେ ଡେରି କରୁଥିଲେ । ସେ ସ୍କୁଲରେ ଡେରିରେ ପହଞ୍ଚୁଥିଲେ । କଲେଜ୍‌ରେ ବି ସେ ଡେରିରେ ପହଞ୍ଚୁଥିଲେ । ବଡ ହେଲାପରେ ବି ସେ କାମରେ ଡେରିରେ ପହଞ୍ଚୁଥିଲେ । ଲୋକେ ସବୁବେଳେ ତାଙ୍କୁ ହସି ଉଡାଉଥିଲେ । ବାପାଙ୍କୁ ଦଣ୍ଡ ଦିଆଯାଉଥିଲା । ତାଙ୍କୁ ଗାଳି କରାଯାଉଥିଲା ଓ ନିନ୍ଦା ବି ଶୁଣିବାକୁ ହେଉଥିଲା । ଏହି ଖରାପ ଅଭ୍ୟାସ ଯୋଗୁଁ ସେ ଜୀବନରେ

କେତେଥର ହାରିଥିଲେ । ସେ ସିନେମା ହଲ୍‌ରେ ଏତେ ଡେରିରେ ପହଞ୍ଚୁଥିଲେ ଯେ ସାଙ୍ଗମାନେ ତାଙ୍କୁ ଦ୍ୱିତୀୟ ଥର ପାଇଁ କେବେ ସିନେମା ଯିବାକୁ ଡାକୁ ନଥିଲେ । କୌଣସି ଗୁରୁତ୍ୱପୂର୍ଣ୍ଣ କାମ ଥିଲାବେଳେ ବି ସେ ଏତେ ଡେରିରେ ପହଞ୍ଚୁଥିଲେ ଯେ କାମଟି ପୂରାପୂରି ବିଗିଡି ଯାଉଥିଲା ।

କେତେ ଥର ଏପରି ବି ହୋଇଛି ଯେ, ବାପା ଏକଲା ସଡକ ଉପରେ ଠିଆ ହୋଇ ନୂଆ ବର୍ଷକୁ ସ୍ୱାଗତ କରିଥିଲେ । କାରଣ ନୂଆ ବର୍ଷର ଭୋଜିସଭାରେ ପହଞ୍ଚିବାରେ ସେ ଡେରି କରି ଦେଇଥିଲେ । ଲୋକମାନେ ତାଙ୍କୁ ଅଯଥାରେ ଅପେକ୍ଷା କରି କରି ଚିଡିଗଲେ । ଅଥଚ ବାପା ଠିକ୍ ସମୟରେ ପହଞ୍ଚି ପାରିଲେ ନାହିଁ ।

ବାପାଙ୍କର ଏହି ଡେରି କରିବା ଘଟଣାସବୁକୁ ଆଲୋଚନା କରି ବାପାଙ୍କ ସାଙ୍ଗମାନେ ବେଶ୍ ମଜା ପାଉଥିଲେ ... ଏବେ ବି ବାପାଙ୍କୁ ଧୀରେ ଚାଲିବା ଜଣା ନାହିଁ । ସେ ଡେରି କରିଥିବାରୁ ସବୁବେଳେ ଦ୍ରୁତ ବେଗରେ ଚାଲୁଥିଲେ । ରାତିରେ ବି ସେ ଡେରି ହୋଇଯାଇଥିବାର ସପନମାନ ହିଁ ଦେଖୁଥିଲେ । କେବେକେବେ ସେ ସ୍ୱପ୍ନରେ ଦେଖୁଥିଲେ, ସେ ପୁଣି ସାନ ପିଲା ବନି ଯାଇଛନ୍ତି ଓ ସ୍କୁଲକୁ ଦଉଡୁଛନ୍ତି । କିନ୍ତୁ ସ୍ୱପ୍ନରେ ହିଁ ଯେତେବେଳେ ଘଡି ଆଡକୁ ଦେଖୁଥିଲେ, ସେ ଜାଣି ପାରୁଥିଲେ ଯେ ଏବେ ସମୟ ହୋଇନାହିଁ । ସମସ୍ତେ ତାଙ୍କୁ ବଧେଇ ଜଣାଉଛନ୍ତି । ଅଧକ୍ଷ ମହାଶୟ ତାଙ୍କୁ ଗୋଟିଏ ଫୁଲତୋଡା ଉପହାର ଦେଉଛନ୍ତି । ସ୍କୁଲର ସଭାଘରେ ତାଙ୍କ ଫଟୋ ଟଙ୍ଗାଯାଉଛି । ତାଙ୍କ ସମ୍ମାନରେ ବାଜା ବଜାଯାଉଛି । କିନ୍ତୁ ଏତିକି ବେଳେ ସବୁବେଳେ ତାଙ୍କ ନିଦ ଭାଙ୍ଗି ଯାଉଥିଲା । ସେ ଭାବୁଥିଲେ, ସେ ଏବେ ଯଦି ସାନପିଲା ହୋଇଯାଆନ୍ତି, ତେବେ ସେ ଆଉ କେବେ ସ୍କୁଲରେ ଡେରିରେ ପହଞ୍ଚିବେ ନାହିଁ । କିନ୍ତୁ ଏହା ସତ ହେଲେ ସିନା ହୁଅନ୍ତା ।



# ବାପା ସିନେମା ଗଲେ

ପିଲାବେଳେ, କେହି ବାପାଙ୍କୁ ସିନେମା ଦେଖେଇ ନେଉ ନଥିଲେ । ତାଙ୍କୁ କୁହାଯାଉଥିଲା ''ଏବେ ତୁ ଛୋଟ ପିଲା..... ଆହୁରି ବହୁତ ସମୟ ଅଛି । ପୁଣି କୁହାଯାଉଥିଲା, ତୁ ଦେଖିବା ପରି ସେଥିରେ ଖାସ୍ କିଛି ନାହିଁ ।''

ଜେଜେ ଓ ଜେଜେମା' ସବୁବେଳେ ଏହା ହିଁ କହୁଥିଲେ । ଖୁଡି କହୁଥିଲେ, ''ମୋତେ ପଚାରିବ ତ ମୁଁ କହିବି ସିନେମା ଡିଆଁରୋଗର ଘର । ଖାଲି କ'ଣ ଡିପ୍‌ଥେରିଆ ? ତା' ସାଙ୍ଗକୁ କାଛୁ, ଜ୍ୱର, ଯକ୍ଷ୍ମା, କାଶ ଭଳି ରୋଗ ଛଡା ଆଉ କିଛି ନାହିଁ ସିନେମାରେ ... ।''

ଆଉ ତା'ପରେ ଖୁଡି ଡିପ୍‌ଥେରିଆ ବିଷୟରେ ଗୋଟିଏ ଲମ୍ବା ଭାଷଣ ଆରମ୍ଭ କରିଦେଉଥିଲେ । ବାପାଙ୍କର ସବୁ ଅଳି ବେକାର ହେଉଥିଲା । ବାପା ତାଙ୍କର ସବୁ ସାଙ୍ଗ ସିନେମା ଗଲେ ବି ଡିପ୍‌ଥେରିଆ କାନ୍ଥୁ, ଜ୍ୱର, ଯକ୍ଷ୍ମା, କାଶ, ଆଦି କାହାକୁ ହୋଇ ନଥିବା କଥା ଯେତେ କହୁଥିଲେ ବି ସେମାନେ ଶୁଣୁ ନଥିଲେ । ସବୁବେଳେ ସେଇ ଗୋଟିଏ ଉତ୍ତର :

''ଯେବେ ତୁ ସ୍କୁଲରେ ପଢିବୁ, ସେତେବେଳେ କିଛି ଅସୁବିଧା ନାହିଁ । ଆମେ ତତେ ଡିଆଁ ରୋଗରୁ ଅଟକାଇ ପାରିବୁନି । ସେତେବେଳେ ମନଇଚ୍ଛା ସିନେମା ଯାଇପାରିବୁ ।'

ବାପା ସବୁ ନୂଆ ସିନେମା ଯେମିତି ଦେଖୁଥିଲେ ଯେମିତି ତାଙ୍କ ସାଙ୍ଗମାନେ ତାଙ୍କ ଆଗରେ ବଖାଣୁଥିଲେ । ପିଲାମାନେ ଅଭିନୟ କରି ଦେଖାଉଥିଲେ 'ମାର୍କଅଫ୍ ଜିରୋ' ସିନେମାରେ ଡଗ୍ଲସ୍ ଫେଆର୍‌ବେଙ୍କ୍ସ କିପରି କଳା ପୋଷାକ ପିନ୍ଧି ଘୋଡା ଝପଟାଇ ଆସନ୍ତି ଓ ତାଙ୍କର ସବୁ ଶତ୍ରୁଙ୍କୁ ମାରି ଦିଅନ୍ତି । ସେମାନେ ଚାର୍ଲି ଚାପ୍‌ଲିନ୍ ଓ ମସ୍‌ଖରେ ଇଗୋର୍ ଇଲିନ୍‌ସ୍କିଙ୍କ ପତଳା, ଓ ଲମ୍ବା ଶରୀର ଓ ଚାଲିର ନକଲ କରୁଥିଲେ । ସେଇ ଅଭିନୟଗୁଡିକୁ ଠିକ୍ ରୂପେ କରିବା ପାଇଁ ସେମାନେ ସବୁବେଳେ ଚେଷ୍ଟା କରୁଥିଲେ । ସେମାନେ ବିଖ୍ୟାତ ଗଉଡ ୱିଲିଅମ୍ ହାର୍ଟ୍‌କୁ ନକଲ କରିବା ପାଇଁ ଜଣେ ଆଉ ଜଣଙ୍କର ପିଠି ଉପରେ ଚଢି ଏଣେତେଣେ ଧାଁ ଦଉଡ କରୁଥିଲେ ।

ବାପା ବଡ ଲୋକଙ୍କ କଥାରୁ ଶୁଣିଥିଲେ, ମେରୀ ପିକ୍‌ଫୋର୍ଡଙ୍କ ହସ ଭାରି ସୁନ୍ଦର ।

''ତାଙ୍କର ହସ କେମିତି ?'' ବାପା ସାଙ୍ଗମାନଙ୍କୁ ପଚାରନ୍ତି । ଜଣେ ସାଙ୍ଗ ହସି ଦେଖାଇଲା ମେରୀ, ପିକ୍‌ଫୋର୍ଡଙ୍କ ହସ କିପରି ଦେଖାଯାଏ । ସେ ବହୁତ ଚେଷ୍ଟା କରିଥିଲା ତାଙ୍କ ପରି ହସିବା ପାଇଁ । ଅନ୍ୟ ସାଙ୍ଗମାନେ କହିଥିଲେ ମେରୀ ପିକଫୋର୍ଡଙ୍କ ଠାରୁ ବି ଏହାର ହସ ଅଧିକ ସୁନ୍ଦର । କାରଣ ମେରୀ ବହୁତ ବର୍ଷରୁ ହସି ଆସୁଛନ୍ତି, ଆଉ ସେଥିପାଇଁ ତାଙ୍କୁ ପଇସା ବି ମିଳୁଛି ।

ମାତ୍ର ସାଙ୍ଗଟିର ଏହା ଏ ପ୍ରକାରର ଦ୍ୱିତୀୟ ଉଦ୍ୟମ ଥିଲା  ଓ ସେ ତା'ର ସାଙ୍ଗ ପାଇଁ ମାଗଣାରେ ହସୁଥିଲା ।

ବାପା ଜାଣିଥିଲେ, ପିଲାମାନେ ତାଙ୍କୁ ସାହାଯ୍ୟ କରିବା ପାଇଁ ଚେଷ୍ଟା କରୁଛନ୍ତି । ହେଲେ, ଏଥିରେ ତାଙ୍କ ସିନେମା ଦେଖିବାର ଆଗ୍ରହ ଅଧିକ ବଢୁଥିଲା ।

ଶେଷରେ ସେହି  ଖୁସିର ଦିନଟି ଆସିଗଲା । ବାପା ସ୍କୁଲରେ ଭର୍ତ୍ତି ହେଲେ । ଏଥର ସେ ସ୍କୁଲ ପିଲା । ପ୍ରଥମ ରବିବାର ଦିନ ହିଁ ତାଙ୍କ ଶିକ୍ଷୟତ୍ରୀ ଶ୍ରେଣୀର ସବୁ ପିଲାଙ୍କୁ 'କୁନି ନାଲି ବୀର' ସିନେମା ଦେଖେଇବାକୁ ନେଲେ । ବାପା ଏଇ ବହିଟି ଆଗରୁ ପଢିଥିଲେ । ସେ ବହିଟିର ବିଭିନ୍ନ ମଜାକୁ ସିନେମା ପରଦାରେ ଦେଖିବାକୁ ଚାହୁଁଥିଲେ ।

ବାପାଙ୍କ ଘର ପାଖରେ ସିନେମାଘର ଥିଲା । ବିତ୍ୟାଦାଦା ବି ଏହା ଜାଣିଥିଲେ । ସେ ଦିନ ବାପା ଆସିବା ଆଗରୁ ବିତ୍ୟାଦାଦା ସିନେମାଘର ପାଖରେ ପହଞ୍ଚି ଯାଇଥିଲେ । ସେ ସ୍କୁଲର ସବୁ ପିଲାଙ୍କ ସହ ମିଳାମିଶା କରିବାର ସୁଯୋଗ ପାଇଗଲେ । ଶିକ୍ଷୟତ୍ରୀଙ୍କୁ  ବି ବିତ୍ୟାଦାଦା ଭଲ ଲାଗିଥିଲେ । ବାପା ଯେତେବେଳେ ସିନେମା ଘର ପାଖରେ ପହଞ୍ଚିଲେ, ନିଜ ସାନ ଭାଇଙ୍କୁ ଦେଖି ତାଙ୍କ ପାଟିରୁ ପଦେ ବି କଥା ବାହାରିଲାନି । ସେ ବିତ୍ୟାଦାଦାଙ୍କ କାନ ଧରି ଟାଣି ଟାଣି ନେବାକୁ ଲାଗିଲେ ।  ବିତ୍ୟା ଦାଦା ଭେଁ... କରି କାନ୍ଦି ଉଠିଲେ । ସେ ଏତେ ଜୋର୍‌ରେ କାନ୍ଦିଲେ ଯେ ସେ ପାଟିରେ ଧରିଥିବା ତିନିଟି ଚକୋଲେଟ୍ ତଳେ ଖସିପଡିଲା । ବାପାଙ୍କ ଶ୍ରେଣୀରେ ପଢୁଥିବା ଝିଅମାନେ ବିତ୍ୟାଦାଦାଙ୍କୁ ଆଦର କରୁଥିଲେ । ବିତ୍ୟାଦାଦା ଖୁବ୍ ଶାନ୍ତ ଓ ସରଳ ପିଲା ଥିଲେ । ତାଙ୍କୁ କେହି ଚକୋଲେଟ୍ ଦେଲେ ସେ କେବେ ମନା କରୁନଥିଲେ ।

ବିତ୍ୟାଦାଦା ଏତେ ଜୋର୍‌ରେ କାନ୍ଦିଲେ ଯେ ବାପାଙ୍କ ଶ୍ରେଣୀର ସୁବ ପିଲା ତାଙ୍କ ପକ୍ଷ ନେଲେ । ଶିକ୍ଷୟିତ୍ରୀ ବି କହିଲେ, ''ଇଏ, ମୋ ସହିତ ଯିବ, ମୁଁ ତା'ର ଦାୟିତ୍ୱ ନେବି ।''

ଏହା ଶୁଣି ବାପା ସାନଭାଇଙ୍କ କାନ ଛାଡିଦେଲେ । ପିଲାମାନେ ମୁଖ୍ୟ ଦୁଆର ଦେଇ ଭିତରକୁ ଯାଉଥିଲେ । ବିତ୍ୟାଦାଦା ଖୁସିରେ ଠେକୁଆ ପରି ଡେଇଁ ଡେଇଁ ଚାଲୁଥାନ୍ତି । ହଠାତ୍ ସେ ଝୁଣ୍ଟି ପଡିଗଲେ । ବାପା ତାଙ୍କ ପଛେ ପଛେ ଚାଲୁଥିଲେ । ସେ ତଳେ ପଡିଥିବା ତାଙ୍କ ଛୋଟ ଭାଇକୁ ଝୁଣ୍ଟି ତାଙ୍କ ଉପରେ ପଡିଗଲେ । ଆଉ ତା'ପରେ ଖୁସିରେ ଧାଉଁଥିବା ସବୁ ପିଲା ଜଣକ ପରେ ଜଣେ ସେଇ ଦୁଇ ଭାଇଙ୍କ ଉପରେ ଝୁଣ୍ଟି ପଡିଲେ । ଏତେ ପିଲା ତାଙ୍କ ଉପରେ ପଡିଥିବାରୁ, ତାହା ବିତ୍ୟାଦାଦା ଓ ବାପାଙ୍କ ପାଇଁ ଖୁବ୍ ଓଜନଦାର ଓ କଷ୍ଟକର ହୋଇପଡିଥିଲା ବିତ୍ୟାଦାଦା, ଯିଏ କିଛି ସମୟ ଆଗରୁ ଠେକୁଆ ପରି ଖୁସିରେ ଡେଇଁ ଡେଇଁ ଚାଲୁଥିଲେ, ସେ କୁକୁର ହାବୁଡରେ ପଡିଥିବା ଠେକୁଆ ପରି କୁଁ କୁଁ ହେଉଥିଲେ । ବାପା ମଧ୍ୟ ପାଟି କରୁଥିଲେ । ସେତେବେଳେ ଶିକ୍ଷୟତ୍ରୀମାନେ ଦଉଡି ଆସିଲେ । ସେମାନେ ଭିଡକୁ ଅଟକାଇ ସମସ୍ତଙ୍କୁ ଉଠାଇଲେ । ବିତ୍ୟାଦାଦା ଓ ବାପା ପୂରା ନୀଳ ପଡି ଯାଇଥିଲେ । ଦୁହିଁଙ୍କର ଏ ଅବସ୍ଥା ଦେଖି ତାଙ୍କୁ ଘରକୁ ପଠାଇ ଦିଆଗଲା । ସେମାନଙ୍କୁ ଏପରି ଖଣ୍ଡିଆଖାବରା ହୋଇ ଫେରିବାର ଦେଖିବା ମାତ୍ରେ ଖୁଡି ଆନନ୍ଦରେ ଚିତ୍କାର କରି କହିଲେ, ''ଦେଖିଲ ? ମୁଁ ଆରମ୍ଭରୁ ହିଁ କହିଥିଲି ନା !''

ଏହାପରେ ବହୁତ ଦିନ ପର୍ଯ୍ୟନ୍ତ ବାପାଙ୍କୁ ସିନେମା ଦେଖିବାକୁ ଛଡାଗଲାନି । କିଛି ଦିନ ପରେ ସେ ସିନେମା ଦେଖିବାକୁ ଗଲେ । କେବଳ 'କୁନି ନାଲି ବୀର' ନୁହେଁ ଆହୁରି ବହୁତ ସିନେମା ସେ ଦେଖିଲେ । ଆଜି ବି ସେ ସିନେମା ଦେଖିବାକୁ ଭଲ ପାଆନ୍ତି । ବିତ୍ୟାଦାଦା ବି କେତେ ସିନେମା ଦେଖିଲେଣି । ସେ ମଧ୍ୟ ସିନେମା ଦେଖିବାକୁ ଭଲ ପାଆନ୍ତି ।



# ବାପାଙ୍କୁ ଝିଅମାନେ ହଇରାଣ କରୁଥିଲେ

ପିଲାବେଳେ ବାପା ଯେତେବେଳେ ପ୍ରଥମ ଥର ସ୍କୁଲକୁ ଗଲେ ପ୍ରତିଦିନ ସାଧାରଣତଃ ଏପରି ହେଉଥିଲା : ସ୍କୁଲ ଘଣ୍ଟି ବାଜୁଥିଲା । ମଝିରେ ଖାଇଛୁଟି ହେଉଥିଲା । ସମସ୍ତେ ଖିଆପିଆ ସାରୁଥିଲେ । ସବୁପିଲା ନିଜ ନିଜ ଜାଗାରେ ଯାଇ ବସୁଥିଲେ । କିନ୍ତୁ ବାପା ଶ୍ରେଣୀ ବାହାର ଦରଜା ପାଖରେ ଠିଆ ହୋଇ କାନ୍ଦୁଥିଲେ । ଆଉ ଶ୍ରେଣୀ ସବୁ ପିଲା ତାଙ୍କୁ ଦେଖି ହସୁଥିଲେ । ଶିକ୍ଷୟତ୍ରୀ ଯେତେବେଳେ ଆସୁଥିଲେ, ସେ ବୁଝି ଯାଉଥିଲେ କ'ଣ ହୋଇଛି । "କ'ଣ ହେଲା ?" ସେ ହସି ପଚାରୁଥିଲେ । "କ'ଣ ଝିଅମାନେ ତୁମକୁ ଥଟ୍ଟା କରୁଛନ୍ତି ?" ବାପା ମୁଣ୍ଡ ହଲାଇ 'ହଁ' କହି ଦେଉଥିଲେ । ଝିଅମାନେ ବାପାଙ୍କୁ

କାହିଁକି ହଇରାଣ କରୁଥିଲେ ? ସେମାନେ ତାଙ୍କୁ କିପରି ହଇରାଣ କରୁଥିଲେ ?

ଏହା ବହୁତ ସାଧାରଣ କଥା ଥିଲା । ଖାଇଛୁଟି ପରେ ଯେତେବେଳେ ସବୁ ପିଲା ଶ୍ରେଣୀ ଭିତରକୁ ଆସୁଥିଲେ, ତିନି-ଚାରି ଜଣ ଝିଅ ଏକାଠି ଆସି ବାପାଙ୍କ ଜାଗାରେ ବସି ଯାଉଥିଲେ ଓ ବାପାଙ୍କୁ ଚାହିଁ ହସୁଥିଲେ । ବାପା ବହୁତ ଚୁପ୍‌ଚାପ୍ ଓ ଲାଜକୁଳା ଥିଲେ । ଏହା ଆଗରୁ ସେ କେବଳ ଗୋଟିଏ ଝିଅକୁ ଚିହ୍ନିଥିଲେ । ସେ ଥିଲା ମାଶା । ସେ ସବୁବେଳେ ଝିଅଙ୍କଠାରୁ ଦୂରରେ ରହିବାକୁ ଚେଷ୍ଟା କରୁଥିଲେ । ଝିଅମାନେ ବାପାଙ୍କର ଏହି ଲାଜକୁଳା ସ୍ୱଭାବ ଜାଣିଗଲେ ଓ ତାଙ୍କୁ ଚିଡାଇବା ଆରମ୍ଭ କରିଦେଲେ ।

ଯଦି ତୁମକୁ ଗୋଟିଏ ଝିଅ ପାଖରେ ବସିବାକୁ ପଡେ, ତେବେ କିଛି ଅସୁବିଧା ନାହିଁ । କିନ୍ତୁ ଯଦି ଚାରି ଜଣ ଝିଅ ଏକା ସାଙ୍ଗରେ ତୁମ ଜାଗାରେ ବସିବେ ଓ ତୁମକୁ ଦେଖି ପାଟିକରି ହସିବେ, ତେବେ କଥାଟା ନିଶ୍ଚୟ କିଛିଟା ଅଲଗା ହେବ । ଆଉ, ଏଥିରେ ପୂରା ଶ୍ରେଣୀ ଯଦି ହସିବ, ତେବେ ଅନ୍ୟ ବାଟ ବି ନାହିଁ । ଏଥିପାଇଁ ବାପା ଶ୍ରେଣୀ ବାହାରକୁ କାନ୍ଦି କାନ୍ଦି ଚାଲି ଯାଉଥିଲେ ଓ ଦରଜା ପାଖରେ ଠିଆ ହୋଇ ଜୋର୍‌ରେ କାନ୍ଦୁଥିଲେ । ସବୁ ପିଲା ତାଙ୍କୁ ଦେଖି ହସୁଥିଲେ । ପୁଅମାନେ କହୁଥିଲେ,''ତୁ ସେମାନଙ୍କୁ କାହିଁକି ଦେଖୁଛୁ ? ତାଙ୍କୁ ତୁ ତୋ' ଜାଗାରୁ ଉଠାଇ ଦେ' । ସେମାନେ ଯଦି ନ ଶୁଣନ୍ତି ତେବେ ଏଇ ଝିଅଟାଙ୍କୁ ଧକ୍କା ମାରି ଉଠାଇ ଦେ' । ଏମିତି ଜୋର୍‌ରେ ଧକକା ମାରେ, ଯେମିତି ସେମାନେ ପାନେ ପାଇଯିବେ ।''

ତା'ପରେ ସେମାନେ ସେଇ ଝିଅଟିକୁ ଠେଲି ଦେଉଥିଲେ, କାହିଁକି ନା ସେ ସମସ୍ତଙ୍କଠୁ ଜୋର୍‌ରେ ହସୁଥିଲା ଓ ଅଧିକ ଚିଡାଉଥିଲା । ସେ ଭାରି ଚଞ୍ଚଳ ଓ ସୁନ୍ଦର ଝିଅ ଥିଲା । ତା'ର ନାଁ କ'ଣ ? ତମାରା, ଗାଲ୍ୟା, ଭେରା ନା ଲ୍ୟୁସା ? ନା, ନା ତା'ର ନାଁ ଭାଲ୍ୟା ଥିଲା । ବୋଧହୁଏ ସେ ଜାଣିଥିଲା, ଶ୍ରେଣୀର ସବୁ ପିଲାଙ୍କ ଭିତରେ ବାପା ତାଙ୍କୁ ଅଧିକ ଭଲ ପାଉଥିଲେ । ଝିଅମାନେ ଏକଥା ଜାଣି ଯାଇଥିଲେ । ସେଥିପାଇଁ ସେମାନେ ଏତେ ଜୋର୍‌ରେ

ହସୁଥିଲେ । ହେଲେ, ଏଥିରେ ପିଲା ବାପାଙ୍କୁ କାନ୍ଦ ଲାଗୁଥିଲା ।

ଶେଷରେ ସବୁଦିନ ଏପରି ଘଟଣା ଦେଖି ଶିକ୍ଷୟତ୍ରୀ ମଧ ବିରକ୍ତ ହୋଇଗଲେ । ଦିନେ ବାପା କାନ୍ଦୁଥିବା ବେଳେ ସେ ପହଞ୍ଚିଗଲେ, ବାପା ତାଙ୍କ ପଛେ ପଛେ ଚାଲିଲେ । ଶ୍ରେଣୀରେ ଶିକ୍ଷୟତ୍ରୀ କହିଲେ : ଏଇ ଶ୍ରେଣୀରେ ଷୋହଳ ଜଣ ଝିଅ ଓ ଅଠର ଜଣ ପୁଅ ଅଛନ୍ତି । ଷୋହଳ ଜଣ ଝିଅ କେବଳ ଜଣେ ପୁଅକୁ ଚିଡାଉଛନ୍ତି । ପ୍ରଶ୍ନ ହେଉଛି : ସେମାନେ ଆଉ ସତର ଜଣ ପୁଅକୁ କାହିଁକି ଚିଡାଉ ନାହାନ୍ତି ? ଏହାର ଉତ୍ତର କିଏ ଦେଇପାରିବ । ସମସ୍ତେ ହସି ଉଠିଲେ । ଶିକ୍ଷୟତ୍ରୀ ପୁଣି କହିଲେ : ସେମାନେ କେବଳ ଜଣେ ପୁଅକୁ କାହିଁକି ଥଟ୍ଟା କରୁଛନ୍ତି ? ମୁଁ ମଜାରେ ଏହା କହୁନି । ମୋତେ ଏହାର ଉତ୍ତର ଦରକାର ।''ସମସ୍ତେ ଚୁପ୍ ହୋଇଗଲେ । କିଛି ଝିଅ ଗୁଣୁ ଗୁଣୁ ହୋଇ ଗପିବାରେ ଲାଗିଲେ । କିଛି ସମୟ ପରେ ଜଣେ ପୁଅ ନିଜ ହାତ ଉଠାଇଲା ଓ କହିଲା :

''ଏଥିପାଇଁ, ଯେ ସେ କାନ୍ଦେ ।''

''ଠିକ୍ କହିଛ ।'' ଶିକ୍ଷୟିତ୍ରୀ କହିଲେ । ''ମନେରଖ, ଆମେ ଆଗରୁ ଜାଣିଛେ, କାନ୍ଦିବା ଅପେକ୍ଷା ହସିବା ଭଲ ।' ବୁଝିଲ ?'' ସେ ବାପାଙ୍କୁ ପଚାରିଲେ ।

''ହଁ,'' ବାପା ଗୁଣୁଗୁଣୁ ହୋଇ କହିଲେ । ''ଏହାକୁ ମନେ ରଖିବାକୁ ଚେଷ୍ଟା କର ।'' ସେ କହିଲେ । ''ତୁମେ ଯଦି ସେମିତି ନ କରିବ, ଝିଅମାନେ ଜୀବନସାରା ତୁମକୁ ଚିଡଉଥିବେ ..... ''ବାପା ସାରା ଜୀବନ ଏପରି କାନ୍ଦିବାକୁ ଚାହୁଁ ନଥିଲେ । ତା'ପରେ ଯେବେ ଝିଅମାନେ ପୁଣି ତାଙ୍କ ଜାଗାରେ ବସି ତାଙ୍କୁ ଦେଖି ହସିଲେ । ସେ କାନ୍ଦିଲେନି । ସେ ଧୀରେ ଯାଇ ସେଇ ଝିଅଟି ପାଖରେ ବସିଲେ, ଯାହାକୁ ସେ ବେଶୀ ପସନ୍ଦ କରୁଥିଲେ । ସମସ୍ତେ ସେଇ ଝିଅକୁ ଦେଖି ହସିଲେ । ସେ କାନ୍ଦିଲାନି, କିନ୍ତୁ ହସିବା ବନ୍ଦ କରି ଦେଲା । ସେ ବାପାଙ୍କ ସାଙ୍ଗ ହୋଇଗଲା । ତା'ପରେ ଯଦି କେହି ବାପାଙ୍କୁ ହଇରାଣ କରିଛନ୍ତି, ସେମାନେ ଥିଲେ କେବଳ ପୁଅ । ମାତ୍ର ପୁଅଙ୍କର କ'ଣ ଅଛି ? ସେମାନେ ତ ସମସ୍ତଙ୍କୁ ଥଟ୍ଟା କରନ୍ତି ।



# ବାପା ବାଘ ଶିକାର କରିବାକୁ ଗଲେ

ବାପା ଯେବେ ପିଲା ଥିଲେ, ଥରେ ସେ ବାଘ ଶିକାର କରିବାକୁ ଯାଇଥିଲେ । ସେତେବେଳେ ବାଘଟି ବି ପିଲା ଥିଲା । ଯଦିଓ ସେ ସ୍କୁଲକୁ ଯାଉ ନଥିଲା, ସେ ସ୍କୁଲର ପରିସରରେ ହିଁ ରହୁଥିଲା । ଘଟଣାଟି ଏପରି ଥିଲା ।

ବସନ୍ତ ଋତୁ ହୋଇଥାଏ ଦିନେ ସ୍କୁଲ ଛୁଟି ପରେ ବାପା ଓ ତାଙ୍କ ସାଙ୍ଗମାନେ ସ୍କୁଲ ପଡିଆରେ ଖରାରେ ବସିଥିଲେ । ଅନ୍ୟ ପିଲାଙ୍କ ପରି ସେମାନେ ମଧ ବିଭିନ୍ନ ବିଷୟରେ କଥା ହେଉଥିଲେ । ସେମାନେ ନିଜ

ମନପସନ୍ଦର ଆଇସ୍‌କ୍ରିମ୍ , ତାରାଚିହ୍ନ ଶିବିରକୁ କିଏ କିଏ ଯିବେ, ଛୁଟିରେ ନିଜ ବାପା ମାଆଙ୍କ ସହ କିଏ କେଉଁଠିକି ଯିବେ, ଏସବୁ ବିଷୟରେ କଥା ହେଉଥିଲେ । ସବୁ ପିଲା ଏ ପ୍ରକାର କଥାରେ ବ୍ୟସ୍ତ ଥିବାବେଳେ ବାପା ଗୋଟିଏ ବହି ପଢୁଥିଲେ । ବହିଟିରେ କେଉଁ ବିଷୟରେ ଲେଖା ଥିଲା, ତାହା ମୁଁ ଜାଣିନି । ଏଥର ବୋଧହୁଏ କୌଣସି ସାହସିକ କାମ ବିଷୟରେ ଲେଖାଥିଲା । ଯେତେବେଳେ ସମସ୍ତେ କହିବା ବନ୍ଦ କଲେ, ଅଚାନକ ବାପା କହିଲେ :

''ଓଃ, ବାଘ ଶିକାରକୁ ଗଲେ କେତେ ମଜା ହେବ !'' ସମସ୍ତେ ହସି ଉଠିଲେ । ପାମୀ ପାଟି କରି କହିଲା :

''ମୋତେ ବି ସାଙ୍ଗରେ ନେଇ ଯିବୁ !'' ଏଥର ସମସ୍ତେ ପାଟି କରି କହିବାରେ ଲାଗିଲା : ''ଆଉ ମୋତେ ବି ! ମୋତେ ବି !''

ଜଣେ ପିଲା କହିଲା : ''ଚାଲ ଆମେ ସମସ୍ତେ ଯିବା । ଶ୍ରେଣୀର ସବୁ ପିଲା !'' ସମସ୍ତଙ୍କୁ ଏହି କଥାଟି ଭଲ ଲାଗିଲା ।

''ହେଲେ ବାଘ ଶିକାର କେମିତି କରାଯାଏ ? ପାମୀ ପଚାରିଲା ।

''ଏହା ତ ଭାରି ସହଜ ।'' ବାପା କହିଲେ ।

''ପ୍ରଥମେ ନିଜ ହାତୀ ଉପରେ ବସି ଜଙ୍ଗଲ ଭିତରକୁ ଯାଅ । ଜଙ୍ଗଲରେ ମାଙ୍କଡ, ଶୁଆ ଆଦି ପଶୁ ପକ୍ଷୀ ଥିବେ .....।''

''ଆଉ ଗଧ, ରଙ୍ଗୀନ୍ ରୁମାଲ୍, ଗାଜର ବି ଥିବ ।'' ପାମୀ ଥଟ୍ଟା କରି କହିଲା । ''ଆରେ ଆମକୁ ବାଘ ବିଷୟରେ କହ ।''

'' ତାହା ହିଁ ମୁଁ କହୁଛି । ବାଘ ଜଙ୍ଗଲରେ ଲୁଚି ରହିଥାଏ । କେବେ କେବେ ସେ ବାହାରିଆସେ ଓ ହାତୀ ଉପରକୁ ଲଂଫ ଦିଏ । ସେତେବେଳେ ଶିକାରୀ ଗୁଳି କରନ୍ତି । ଆଉ ହାତୀ ନିଜ ଶୁଣ୍ଢରେ ବାଘକୁ ଧରି ଭୂଇଁରେ କଚାଡିଦିଏ ଓ ପାଦରେ ଦଳିଦିଏ । ଦେଖ ! ଏସବୁ କଥା ଏହି ଚିତ୍ରରେ ଅଛି ।

ପିଲାମାନେ ବହୁତ ସମୟ ପର୍ଯ୍ୟନ୍ତ ଚିତ୍ରଟିକୁ ଦେଖିବାରେ ଲାଗିଲେ । ତା'ପରେ ପାମୀ କହିଲା :

"ମୁଁ କହିବି । ତୁମେ ତିନି ଜଣ ହାତୀ ହେବ । ଆମେ ଶିକାରୀ ହେବୁ । ଆମର ଏଇ ସାହିତି ଜଙ୍ଗଲ ହେବ । ସବୁ ଶିକାରୀ ବନ୍ଧୁକ ବଦଳରେ ଗୋଟିଏ ଗୋଟିଏ ବାଡି ଧରିବା । କ'ଣ ସମସ୍ତେ ପ୍ରସ୍ତୁତ ? ଏଥର ବସ ନିଜ ନିଜ ହାତୀ ଉପରେ ! ସେଇଠି ବାଘ ଅଛି । ତା'ର ଦେହରେ ଗାର ଦେଖି ପାରୁଛ ?"

"ମାତ୍ର, ଇଏ ତ ବିଲେଇ ଛୁଆ ।" ବାପା କହିଲେ ।

"ଚୁପକର ।" ତୁମକୁ ତ ଏହା ବି ଜଣାନାହିଁ, ତୁମେ କ'ଣ କହୁଛ । ଆଚ୍ଛା, ମୋ କଥା ଶୁଣ । ଶିକାରୀ ଭାଇମାନେ ! ଆଗକୁ ଚାଲ !"

ବାପା ଶିକାରୀ ଥିଲେ । ନିଜ ହାତୀ ଉପରେ ବସୁବସୁ ସେ ଦେଖିଲେ, ଛୁଆ ବିଲେଇଟି ଆଶ୍ଚର୍ଯ୍ୟ ହୋଇ ଏଇ ଶିକାରୀ ଓ ହାତୀମାନଙ୍କୁ ଦେଖୁଛି । ବିଲେଇ ଛୁଆଟି ଏତେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲା ଯେ ସେ ଦଉଡି ଚାଲିଯିବାକୁ ଚେଷ୍ଟା ବି କଲାନି । ପାମୀ ପାଟି କରି କହିଲା :

"ଚଳାଅ ଗୁଳି !"

ବିଚରା ବିଲେଇ ଛୁଆଟି ଉପରେ ବାଡି ଓ ପଥର ବର୍ଷା ହୋଇଗଲା । ବାପା ବି ନିଜେ କିଛି ଭାବିବା ଆଗରୁ ନିଜ ବାଡିଟି ଫିଙ୍ଗି ଦେଇଥିଲେ । ତେବେ ତାଙ୍କର ବାଡିଟି ବିଲେଇକୁ ବାଜିଲାନି । ବିଲେଇ ଛୁଆଟି ପ୍ରାଣ ବିକଳରେ ଦଉଡିଲା । ହଠାତ୍ ଗୋଟିଏ ପଥର ଆସି ତା ମୁଣ୍ଡରେ ବାଜିଲା । ବିଲେଇ ଛୁଆଟି ଚିହାର କରି ସେଠି ଟଳି ପଡିଲା । ତା' ଗୋଡଗୁଡିକ ଛଟ ଛଟ ହେଲା । ଏଥର ତା'ର ଦେହଟି ପୂରା ନିଶ୍ଚଳ ହୋଇଗଲା ।

"ଆମେ ବାଘକୁ ମାରିଦେଲେ !" ପାମୀ ପାଟିକଲା । ଏ ସମୟରେ ଆଉ ଜଣେ ପିଲା କହିଲା :

"ଆରେ, ଇଏ ତ ମରିଗଲା....."

ସମସ୍ତେ ବିଲେଇ ଛୁଆଟିକୁ ଦେଖିବା ପାଇଁ ଧାଇଁ ଆସିଲେ । କିଛି ସମୟ ଆଗରୁ ଜୀଅନ୍ତା ଥିବା ଏଇ ବିଲେଇ ଛୁଆଟି ଏବେ ମରି ଯାଇଥିଲା । ଏହା ବାପାଙ୍କ ମନକୁ ହଠାତ୍ ଆସିଲା । ସେ ଆଉ ଦଉଡିବନି, ଅନ୍ୟ ବିଲେଇଙ୍କ ସହ ଖେଳିବନି । ସେ ଆଉ କେବେ ବଡ ବିଲେଇ ହୋଇ ପାରିବନି । ଆଉ ମୂଷା ଧରିବନି କିମ୍ବା ଛାତ ଉପରେ ବସି ମିଆଁଉ ମିଆଁଉ କହିବନି । ଏବେ ସବୁ ସରି ଯାଇଥିଲା । ସେ ବୋଧହୁଏ ଏହି ବାଘ ଶିକାର ଖେଳ ଖେଳିବାକୁ ଚାହିଁ ନ ଥିଲେ କେହି ତା'କୁ ଏ ବିଷୟରେ କିଛି କହି ବି ନ ଥିଲେ । ସବୁ ପିଲା ମଲା ବିଲେଇଟି ଚାରି ପାଖରେ ଚୁପ୍ ଚାପ୍ ଛିଡା ହୋଇଥିଲେ । ପାମୀ ବି ଚୁପ୍ ଥିଲା ।

ଏ ସମୟରେ କେହି ପାଟି କରୁଥିବା ଶୁଣିଲେ :

"ଆରେ ମୋ ଛୁଆଟି ! ହାୟ ମୋର ଛୋଟ ବିଲେଇ ଛୁଆ !" ମୁଣ୍ଡରେ ନୀଳ ରିବନ୍‌ରେ ଫୁଲଟିଏ ପିନ୍ଧିଥିବା ଝିଅଟିଏ ଏପରି କହୁଥିଲା ।

ସେ ବିଲେଇ ଛୁଆଟିକୁ ଧୀରେ ଉଠାଇଲା ଓ ଘରକୁ ନେଇଗଲା । ପିଲାମାନେ ବି ଚାଲିଗଲେ । ସେମାନେ ଏତେ ଲଜ୍ଜିତ ଥିଲେ ଯେ କେହି କାହାକୁ ଦେଖିବାକୁ ବି ସାହସ କରୁ ନ ଥିଲେ ।

ସେଇ ଘଟଣା ପରଠୁ ବାପା କେବେ କୌଣସି ବିଲେଇ, କୁକୁର ବା ଅନ୍ୟ କୌଣସି ଜୀବକୁ ଆଘାତ କରି ନାହାନ୍ତି । ଆଉ ସେଇ ଗାର ପଡିଥିବା ଦେହଟି ପାଇଁ ସେ ଆଜି ବି ଦୁଃଖ କରନ୍ତି ।



# ବାପାଙ୍କ ଛବି ଅଙ୍କା

ପିଲା ଥିଲାବେଳେ ବାପା ଛବି ଆଙ୍କିବାକୁ ଖୁବ୍ ଭଲ ପାଉଥିଲେ । ଘରୁ ତାଙ୍କୁ ରଙ୍ଗୀନ୍ ପେନ୍‌ସିଲ ଡବାଟିଏ ଦିଆଗଲା । ସେବେଠାରୁ ସେ କେବଳ ଛବି ଆଙ୍କିବାରେ ଲାଗି ପଡିଲେ । ସେ ଛୋଟ ଛୋଟ ଘର ବନାଉଥିଲେ । ପ୍ରତି ଘର ଉପରେ ଚିମିନିଟିଏ ରହୁଥିଲା । ସବୁ ଚିମିନିରୁ ଧୂଆଁ ଉଠୁଥିଲା । ପ୍ରତି ଘର ପାଖରେ ଗଛଟିଏ ଲେଖାଏଁ ରହୁଥିଲା । ପ୍ରତି ଗଛରେ ଗୋଟିଏ ଚଢେଇ ବସୁଥିଲା । ସବୁ ଘରେ ଲାଲ୍ ରଙ୍ଗ ଦିଆଯାଉଥିଲା । ସବୁ ଛାତର ରଙ୍ଗ ହଳଦିଆ ଥିଲା । ସବୁ ଚିମିନିର ରଙ୍ଗ କଳା ରହୁଥିଲା । ଚିମିନିରୁ ନୀଳ ଓ ଗୋଲାପୀ ରଙ୍ଗର ଧୂଆଁ ଉଠୁଥିଲା । ଗଛଗୁଡିକ ନେଳିଆ

ଓ ଚଢେଇ ସବୁ ଶାଗୁଆ ଥିଲେ । ନୀଳ ଆକାଶରେ ନାଲି ରଙ୍ଗ ବୋଳି ସୁନେଲି ସୂରୁଜଟି ଝଟକୁଥିଲା ।

ସୂରୁଜର ପାଖରେ ହିଁ ରୂପେଲି ଚନ୍ଦ୍ରଟା ଆକାଶ ପାର ହେଉଥିଲା । ଏହାର ଚାରିପଟେ ସୁନେଲି ତାରା ସବୁ ଘେରି ରହିଥିଲେ । ଛବିଟି ଖୁବ୍ ସୁନ୍ଦର ଦିଶୁଥିଲା । କିନ୍ତୁ ବାପାଙ୍କ ଏହି ଛବିଟିକୁ ଯିଏ ଦେଖିଲେ ବି କହୁଥିଲା :

''ତୁ କେଉଁଠି ନୀଳ ଗଛ ଆଉ ଶାଗୁଆ ଚଢେଇ ଦେଖିଛୁ ?''

ବାପା କହୁଥିଲେ : ''ଏହି ଛବିରେ !''

ସ୍କୁଲ ଯିବା ଆରମ୍ଭ ହେବା ଆଗରୁ ବାପା ଭାବୁଥିଲେ ଯେ, ସେ ବହୁତ ଭଲ ଛବି ଆଙ୍କି ଜାଣନ୍ତି । କିନ୍ତୁ ସ୍କୁଲରେ ଆଉ ସମସ୍ତଙ୍କର ଅଲଗା ରକମର ଖିଆଲ ଥିଲା । ଅନ୍ୟମାନଙ୍କ ଆଖିରେ ତାଙ୍କ ଛବି ଏତେ ଖରାପ ଥିଲା ଯେ, ତାଙ୍କ ଛବି ଶିକ୍ଷକ ତାଙ୍କୁ ପଦେ ବି କିଛି କହୁ ନଥିଲେ । ଅନ୍ୟ ପିଲାଙ୍କୁ ସେ କହୁଥିଲେ, ''ଏଇଟା ଭଲ ହୋଇଛି, '' ବା ''ଏହା ଭଲ ହୋଇନି'' ବା ''ଏହି ଗାରଟିକୁ ସିଧା କର''। କିନ୍ତୁ ବାପାଙ୍କୁ ସେ ''ଏହା ଭଲ ହୋଇନି'' ବୋଲି ବି କହୁ ନଥିଲେ ।

ବାପାଙ୍କ ଡେସ୍କ ପାଖଦେଇ ଗଲାବେଳେ ତାଙ୍କ ଛବିଟିକୁ ଦେଖିଦେଲେ ତାଙ୍କ ଚେହେରାଟି ଏପରି ବିଗିଡି ଯାଉଥିଲା - ସତେ ଯେମିତି ସେ ଗୋଟିଏ ବଡ ଖଟା ଲେମ୍ବୁ ପାଟିରେ ପୂରାଇଛନ୍ତି । କଥାଟି ବୁଝି ପାରୁନାହଁ ? ତେବେ ତୁମେ ଏକ ବଡ ଖଟା ଲେମ୍ବୁ ନିଜେ ଖାଅ ଓ ଦର୍ପଣରେ ନିଜ ମୁହଁକୁ ଦେଖ । ଶିକ୍ଷକଙ୍କ ମୁହଁ ବି ଏମିତି ବିଗିଡି ଯାଉଥିଲା ।

କେତେ ଜଣ ଝିଅ ବାପାଙ୍କ ପ୍ରତି ବଡ ସଦୟ ଥିଲେ । ଗୁରୁଜୀ ପଛ କରି ଠିଆ ହୋଇଥିଲା ବେଳେ ସେମାନେ ବାପାଙ୍କ ଛବି କାଗଜରେ ଜଲ୍‌ଦି ଜଲ୍‌ଦି କିଛି ଛବି ଆଙ୍କି ଦେଉଥିଲେ । ସେମାନେ ମନଇଚ୍ଛା ଆଙ୍କେବାଙ୍କେ ଛବି ଆଙ୍କି ଦେଉଥିଲେ । କିନ୍ତୁ ବାପାଙ୍କ ପରି ଖରାପ ଛବି କେହି ବି ବନାଇ ପାରୁ ନଥିଲେ । ଏହି ଫରକକୁ ଶିକ୍ଷକ ଚଟାପଟ ବାରି ନେଉଥିଲେ ।

ସେ ବାପାଙ୍କୁ ପଚାରନ୍ତି : ''କିଏ ଏହି ଛବିଟା ବନେଇଛି??'' ବାପା ଭଦ୍ରାମୀର ସହ ଜବାବ ଦେଉଥିଲେ : ''ମୁଁ ନୁହେଁ ...''

''ତାହା ତ ମୁଁ ନିଜେ ଜାଣି ପାରିଛି'' ଶିକ୍ଷକ କହୁଥିଲେ । ''କିନ୍ତୁ ମୁଁ ଏହା ଜାଣିବାକୁ ଚାହୁଁଛି; କିଏ ତୁମକୁ ସାହାଯ୍ୟ କରିଛି ? ଏମିତି କଲେ ତୁମେ କେବେ ବି ଶିଖିପାରିବ ନାହିଁ । ତୁମକୁ ନଜେ ହିଁ ବନାଇବାକୁ ହେବ ।''

''ମୁଁ ଏଥର ନିଜେ ଆଙ୍କିବି'' କହି ବାପା ପୁଣି ଛବି ଆଙ୍କିବାରେ ଲାଗିପଡନ୍ତି । ଶିକ୍ଷକଙ୍କ ଚେହେରା ପୁଣି ବିଗିଡିଯାଏ । ''ଏବେ ମୁଁ ଦେଖିପାରୁଛି, ଏହି ଛବିଟି ତୁମେ ଆଙ୍କିଛ ।''

ତା'ପରେ ମା'-ବାପାଙ୍କର ସଭାରେ ଶିକ୍ଷକ ପୁଣି ଛୋଟ ଭାଷଣଟିଏ ଦେଲେ । କହିଲେ :

''ପ୍ରିୟ ଅଭିଭାବକମାନେ ! ଆମ ଏହି ଶ୍ରେଣୀର ପାଞ୍ଚଜଣ ପିଲାଙ୍କୁ ଛବି ଅଙ୍କାରେ ଭଲ ନମ୍ବର ମିଳିଛି ।'' ଏଥର ସେ ସେମାନଙ୍କ ନାଁ ସବୁ ଶୁଣାଇଲେ । ''ଅଧିକାଂଶ ଛୁଆ ଭଲ ନମ୍ବର ରଖିଛନ୍ତି । ଅଳ୍ପ କେତେଜଣ କମ୍ ନମ୍ବର ରଖିଛନ୍ତି ।'' ସେ ଆହୁରି ତିନୋଟି ନାଁ କହିଲେ ।

ଏହାପରେ ସେ କହିଲେ : ''କିନ୍ତୁ ଜଣେ ପୁଅ ଅଛି'', ତାଙ୍କ ଚେହେରା ପୁଣି ବିଗିଡିଗଲା ଓ ସେ ପିଲା-ବାପାଙ୍କର ନାଁଟି ଶୁଣାଇଲେ । ''କଥାଟି ଏଇଆ ନୁହେଁ ଯେ ସେ ଖରାପ ନମ୍ବର ରଖିଛି । ମତେ ଲାଗୁଛି, ତା' ଠାରେ କିଛି ଅସୁବିଧା ଅଛି । ଏପରି କିଛି ଅସୁବିଧା, ଯାହା ତାକୁ ଛବି ଶିଖିବାକୁ ଦେଉନାହିଁ ।''

ଜେଜେ ଓ ଜେଜେମା' ବହୁତ ନିରାଶ ହେଲେ । କିନ୍ତୁ ସତଟା ଏପରି ଥିଲା । ପରେ ବାପା ସ୍କୁଲପଢା ସାରିଲେ । ସେ ବୈଷୟିକ ସ୍କୁଲରେ ପାଠ ସାରି କଲେଜକୁ ଗଲେ । ଏତିକି ସମୟ ଭିତରେ ସେ କେବଳ ବିଲେଇ ହିଁ ଆଙ୍କିବା ଶିଖି ପାରିଥିଲେ । କିନ୍ତୁ ପ୍ରତ୍ୟେକ ଛୁଆ ବିଲେଇ ଆଙ୍କି ଜାଣନ୍ତି । ଛୋଟ ଛୋଟ ଛୁଆ ମଧ୍ୟ ବିଲେଇ ଆଙ୍କି ପାରନ୍ତି । ତାଙ୍କ ପ୍ରତି ବାପା ଖୁବ୍

ଈର୍ଷା କରୁଥିଲେ । କାରଣ, ସେମାନଙ୍କ ବିଲେଇ ବାପାଙ୍କ ବିଲେଇଠାରୁ ଯଥେଷ୍ଟ ଭଲ ଦିଶୁଥିଲା ।

ଥରେ ବାପା ଜଣେ ଚିତ୍ରକରଙ୍କୁ ଭେଟିଲେ । ସେ ବାପାଙ୍କ ପରି ଖରାପ ଛବି ଆଙ୍କୁଥିଲେ । କିନ୍ତୁ ସେ କହୁଥିଲେ, ମୋ ଚେହେରା, ଗଛ, ଘୋଡାକୁ ମୁଁ ଏପରି ହିଁ ଦେଖିଛି । ତେଣୁ ଏପରି ଆଙ୍କୁଛି ।''

ଦୁଃଖର କଥା ହେଉଛି, ନିଜ ଛବି ଶିକ୍ଷକଙ୍କୁ ଏହି କଥାଟି କହିବାକୁ ବାପାଙ୍କ ମୁଣ୍ଡରେ ବୁଦ୍ଧି ଜୁଟି ନଥିଲା ।



## ବାପା ଶିକ୍ଷୟିତ୍ରୀଙ୍କୁ ଧୋକ୍କା ଦେଲେ

ପିଲାବେଳେ ବାପା ତା'ଙ୍କ ଶିକ୍ଷୟିତ୍ରୀଙ୍କୁ ବେଶୀ ପସନ୍ଦ କରୁଥିଲେ । ଅନ୍ୟସବୁ ପିଲା ବି ତାଙ୍କୁ ପସନ୍ଦ କରୁଥିଲେ । ସେ ଲମ୍ବା ଥିଲେ ଓ ଦେଖିବାକୁ ତିଳେ ବି ସୁନ୍ଦର ନଥିଲେ । ସବୁବେଳେ କଳା ପୋଷାକ ପିନ୍ଧୁଥିଲେ । ବଡ଼ ଲୋକଙ୍କ ଆଖିରେ ସେ ସୁନ୍ଦର ନଥିଲେ । କିନ୍ତୁ ପିଲା ବାପାଙ୍କୁ ସେ ବହୁତ ସୁନ୍ଦର ଲାଗୁଥିଲେ । ତାଙ୍କ ନାମ ଅଫ୍‌ନାସିଆ ନିକିପୋରୋଭା । ସବୁବେଳେ ହସହସ ମୁହଁ;କିନ୍ତୁ କାମରେ  ସେ ବେଶ୍ କଡ଼ା ଥିଲେ । ସବୁଠୁଁ ବଡ଼ କଥା ଥିଲା, ସେ ଜଣେ ଭଲ ମହିଳା ଥିଲେ । ସବୁପିଳା ଜାଣୁଥିଲେ, ଯଦି ଶିକ୍ଷୟିତ୍ରୀ

କାହାରି ଉପରେ ଅସନ୍ତୁଷ୍ଟ ହେଉଥିଲେ, ତେବେ ତାହା ପିଲାର ଦୋଷରୁ । ବିନା କାରଣରେ ସେ କାହାରି ଉପରେ ରାଗୁ ନଥିଲେ । କିମ୍ବା ଅନାଦର କରୁ ନଥିଲେ । ସବୁ ପିଲାଙ୍କୁ ସେ ଖୁବ୍ ଭଲ ପାଉଥିଲେ । ସେମାନଙ୍କ ଭିତରୁ କେହି ଯଦି ଘରକୁ ଦିଆଯାଇଥିବା କାମ କରୁ ନଥିଲେ ବା ଶ୍ରେଣୀରେ ପାଟି କରୁଥିଲେ, ତେବେ ତା' ଉପରେ ସେ ବିରକ୍ତ ହେଉଥିଲେ । ସମସ୍ତେ ଜାଣିଥିଲେ, କୋଡିଏ ବର୍ଷ ହେଲା ଶିକ୍ଷୟିତ୍ରୀ ଏହି ସ୍କୁଲରେ ପଢାଇ ଆସୁଛନ୍ତି । ଆଉ, ଏହା ବି ସଭିଙ୍କୁ ଜଣାଥିଲା ଏହି ଶିକ୍ଷୟିତ୍ରୀ ଅଳସୁଆ, ଚୁଗୁଲିଆ ବା ଲାଞ୍ଚୁଆ ପିଲାଙ୍କୁ ଆଦୌ ଭଲ ପାଆନ୍ତି ନାହିଁ ।

ଦିଦିଙ୍କ ପଢାଇବା ଢାଞ୍ଚା ବହୁତ ମଜାଦାର ଥିଲା । ଏହି କାରଣରୁ ତାଙ୍କ ଶ୍ରେଣୀରେ ପିଲାମାନେ ଆଦୌ ପାଟି କରୁ ନଥିଲେ । ଦିନେ କେହି ପିଲା ବାପାଙ୍କ ଅଣ୍ଟାରେ ପିନ୍‌ଟିଏ ଫୋଡି ଦେଲା । ତାଙ୍କୁ ଖୁବ୍ କଷ୍ଟ ହେଲା ।

"ଉଃ ।" ବାପା ପାଟି କରି ଉଠିଲେ । ଶିକ୍ଷୟିତ୍ରୀ ପଚାରିଲେ :

"କ'ଣ ହେଲା ?"ବାପା କିଛି କହିଲେନି ।

ଏଥିରେ ଶିକ୍ଷୟିତ୍ରୀ ବିରକ୍ତ ହୋଇ କହିଲେ ,"ଶ୍ରେଣୀରୁ ବାହାରି ଯାଅ ।"

ବାପା ଉଠିଲେ ଓ ଶ୍ରେଣୀ ବାହାରକୁ ଯିବାକୁ ଲାଗିଲେ । ଏ ସମୟରେ ଦୁଇଜଣ ଝିଅ ପାଟିକରି କହିଲେ,"ଜାୟଚିକୋଭ୍ ତା'କୁ ପିନ୍‌ରେ ଫୋଡିଦେଲା ।"

ଏହା ଶୁଣି ଶିକ୍ଷୟିତ୍ରୀ କହିଲେ, "ମୁଁ ଚାହେଁ ଯିଏ ପାଟି କଲା, ଯିଏ ପିନ୍ ଫୋଡିଲା ଓ ଯିଏ ଦୁଷ୍ଟାମୀ କଲା, ସେ ସମସ୍ତେ ଶ୍ରେଣୀ ବାହାରକୁ ଯାଆନ୍ତୁ । କ'ଣ ମୋ କଥା ଠିକ୍ ବୁଝି ପାରିଲ ତ ?"

ସମସ୍ତେ ପାଟି କରି କହିଲେ, "ହଁ ।"

ଏଥିପାଇଁ ସେ ଝିଅ ଦୁଇଟି, ବାପା ଓ ଜାୟଚିକୋଭ୍ ସହ ଶ୍ରେଣୀ ବାହାରେ ଠିଆ ହୋଇ ରହିଲେ । ବାପା କାନ୍ଦୁଥିଲେ । ସେ ବହୁତ ଦୁଃଖୀ ଥିଲେ, କାରଣ ତାଙ୍କୁ ପିନ୍ ଫୋଡା ଯାଇଥିଲା, ପୁଣି ଶ୍ରେଣୀରୁ ବି ବାହାର

କରାଯାଇଥିଲା । ଢାୟଚିକୋଭ୍, ବାପା ଓ ଝିଅ ଦୁହିଁଙ୍କୁ ଚାହିଁ ହସୁଥିଲା । କିନ୍ତୁ ସତରେ ସେ ଏତେ ଖୁସି ନଥିଲା, ଯେତେ ସେ ଦେଖେଇ ହେଉଥିଲା । ଝିଅ ଦୁହେଁ ହସୁନଥିଲେ କି କାନ୍ଦୁ ବି ନଥିଲେ କିନ୍ତୁ ଦୁହିଁଙ୍କୁ ବହୁତ ଖରାପ ଲାଗୁଥିଲା ।

ପରଦିନ ବାପା ଗୋଟିଏ ବଡ କାଠ ଖୁଣ୍ଟି ନେଇ ଆସିଥିଲେ । ଶିକ୍ଷୟିତ୍ରୀ କଳାପଟାରେ ଲେଖିବାକୁ ଯାଇ ପିଲାଙ୍କ ଆଡକୁ ପିଠି କରିଥିଲେ, ବାପା ଏ ସମୟରେ ଖୁଣ୍ଟାଟିକୁ ବାହାର କରି ଢାୟଚିକୋଭ୍‌ର ହାତରେ ଭୁଷି ଦେଲେ । ଢାୟଚିକୋଭ୍ ଏତେ ଜୋର୍‌ରେ ଚିତ୍କାର କଲା ଯେ ବାପା ଖୁବ୍ ଡରିଗଲେ । ଶିକ୍ଷୟିତ୍ରୀ ଭୀଷଣ ଅସନ୍ତୁଷ୍ଟ ହେଲେ ।

''ପୁଣି ତୁମେ ନା, ଢାୟଚିକୋଭ୍ ?'' ସେ ପଚାରିଲେ । ''ମୁଁ ନାଇଁ..... ସେ ମୋ ହାତରେ ଖୁଣ୍ଟା ଭୁଷି ଦେଲା ।'' ସେ ତା' ହାତ ଦେଖାଇବାକୁ ଯାଇ ଉପରକୁ ଉଠାଇଲା ।

''କାଲି ତୁମେ କାହା ହାତରେ ପିନ୍ ଫୋଡିଥିଲ, ଆଉ ଆଜି ତୁମ ହାତରେ କେହି ଖୁଣ୍ଟା ଭୁଷି ଦେଲା । ବହୁତ ମଉଜିଆ କଥା ତ । ଢାୟଚିକୋଭ୍‌ର ହାତରେ କିଏ ଖୁଣ୍ଟା ଭୁଷିଲା ?''

ସବୁ ପିଲା ବାପାଙ୍କ ଆଡକୁ ମୁହଁ ବୁଲାଇ ଅନାଇଲେ । କିନ୍ତୁ କେହି କିଛି କହିଲେନି । କେହି ବି ତାଙ୍କ ବିରୁଦ୍ଧରେ କହି ପୂର୍ବଦିନ ପରି ଶ୍ରେଣୀ ବାହାରେ ଠିଆ ହେବାକୁ ଚାହିଁଲେନି । ଢାୟଚିକୋଭ୍ ବି କିଛି କହିଲା ନାହିଁ । ସେ କେବଳ ସକସକ ହେଉଥାଏ ।

''ତେବେ କିଏ ଏପରି କଲା ?'' ଶିକ୍ଷୟିତ୍ରୀ କଠୋର ଗଳାରେ ପଚାରିଲେ । ବାପା ଏତେ ଡରିଗଲେ ଯେ ସେ ନିଜକୁ ନିଜେ କହୁଥିବା ଶୁଣାଗଲା, ''ମୁଁ ତାକୁ ଭୁଷିନି ..... ''

ଏହା ଶୁଣି ଶିକ୍ଷୟିତ୍ରୀ ପଚାରିଲେ, ''ତୁମେ ତା'କୁ କ'ଣ ଭୁଷିନାହଁ ?''

ଆଉ ବାପା ଖୁବ୍ ଚଞ୍ଚଳ କହିଦେଲେ, ''ଏଇ ଖୁଣ୍ଟାଟା ।''

ସାରା ଶ୍ରେଣୀର ପିଲା ହୋ ହୋ ହୋଇ ହସି ଉଠିଲେ । ସେଦିନ ସେମାନେ ଏତେ ଜୋର୍‌ରେ ହସିଥିଲେ ଯେ ପାଖ ଶ୍ରେଣୀରୁ ଶିକ୍ଷକ ବି ଆସିଗଲେ । ସେ କହିଲେ :

"କ'ଣ ଦିଦି, ଆପଣମାନେ ଏତେ ଖୁସି କାହିଁକି ?"

ଏହା ଶୁଣି ଶିକ୍ଷୟିତ୍ରୀ କହିଲେ :

"ଆମେ ଏଥିପାଇଁ ଖୁସି ଏଇ ପିଲାଟି ଆଉ ଜଣେ ପିଲାକୁ ଏହି ଖୁଣ୍ଟାରେ ଭୁଷିନି, ଆଉ ପିଲାଟି କାନ୍ଦିନି ଓ ସେମାନଙ୍କ ବିରୁଦ୍ଧରେ କେହି କହି ନାହାନ୍ତି ଏବଂ କେହି ବି ତାଙ୍କର ବୁଢ଼ୀ ଶିକ୍ଷୟିତ୍ରୀଙ୍କୁ ଧୋକ୍କା ଦେଇ ନାହାନ୍ତି ।"

ଏଥିରେ ସବୁ ପିଲା ନିଜକୁ ଲଜ୍ଜିତ ମନେ କଲେ । ସମସ୍ତେ ବାପାଙ୍କ ଆଡକୁ ଅସନ୍ତୋଷରେ ଦେଖିଲେ । ବାପା ଠିଆ ହୋଇ କହିଲେ :

"କାଲି ସେ ମୋତେ ପିନ୍ ଫୋଡିଦେଇଥିଲା, ଆଉ ମୁଁ ପାଟି କରିଥିଲି । ଆଜି ମୁଁ ତାକୁ ଖୁଣ୍ଟାରେ ଭୁଷିଦେଲି ଓ ସେ ପାଟି କଲା । ଆଉ, ମୁଁ ମିଛ କହିଥିଲି ।"

କିଛି ସମୟ ରହି, ବାପା ପୁଣି କହିଲେ :

"ମୁଁ ଆଉ କେବେ ଏପରି କରିବିନି, ଦିଦି ।"

"ମୁଁ ବି କେବେ ଏପରି ଭୁଲ ଆଉ କରିବିନି," ଜାୟଚିକୋଭ୍ କହିଲା । କିନ୍ତୁ ସେ ପ୍ରଥମେ ବାପାଙ୍କ ଆଡକୁ ରାଗି ଚାହିଁଲା । ତା' କଥାରେ କାହାର ବିଶ୍ୱାସ ନଥିଲା ।

ଶିକ୍ଷୟିତ୍ରୀ କହିଲେ, "ମିଛ କହିବାଠୁ ବଳି ଖରାପ କାମ ଆଉ କିଛି ନାହିଁ ।"

ବାପା ତାଙ୍କୁ ଆଉ କେବେ ମିଛ କହି ନଥିଲେ.... ବୋଧହୁଏ ଆଉ କେବେ ନୁହେଁ ।



# ବାପା ଟ୍ରାମ୍ ଅଟକାଇଲେ

ପିଲାବେଳେ ବାପାଙ୍କର ଜଣେ ସାଙ୍ଗ ଥିଲା । ତା' ନାଁ ମିଶା ଗୋର୍ବୁନୋଭ । ସେ ବାପାଙ୍କ ଶ୍ରେଣୀରେ ପଢୁଥିଲା ।

ମିଶା ବହୁତ ଖୁଣ୍ଟୁବୁଦ୍ଧିଆ ପିଲା ଥିଲା । ଖାଇଛୁଟି ହେଲାକ୍ଷଣି ମିଶା ପାଖରେ ପିଲାଙ୍କ ଭିଡଜମି ଯାଉଥିଲା । ସଭିଏଁ ମିଶାର ମିଆଁଉ କରିବା, କୁକୁର ପରି ଭୋକିବା, ମାଛି ପରି ଗୁଣୁଗୁଣୁ ଶବ୍ଦ ବା ଘୁଷୁରୀ ପରି ଘୁଡୁଘୁଡୁ ଶବ୍ଦ ଶୁଣିବାକୁ ଭଲ ପାଉଥିଲେ । କୁକୁଡା ବୋବାଇବା ଶବ୍ଦ କରିବାରେ ତା'ର ସମତୁଲ କେହି ନଥିଲେ । ଏସବୁ ଗୋଟିଏ ନାଟକ ପରି ହେଉଥିଲା । ସେ ପ୍ରଥମେ କୁକୁଡା ଛୁଆକୁ ନକଲ କରିବା ପରି କରୁଥିଲା । ତାର "କୁକୁଡୁଁ "

ଶବ୍ଦ ଠିକ୍ ଭାବରେ ହେଉଥିଲା, କିନ୍ତୁ 'କୁଁ' ଆସୁ ନଥିଲା । କିନ୍ତୁ କୁକୁଡ଼ାଛୁଆଟା ଉଡିଯାଇ କୌଣସି ବାଡ ଉପରେ ବସୁଥିଲା ଓ ବୋବାଉଥିଲା । ସେ ଡା'ର ପର ଫଡ୍‌ଫଡ୍ କରି ଝାଡୁଥିଲା । ଏଥିପାଇଁ ମିଶା ତା' ସାର୍ଟଟିକୁ ପ୍ୟାଣ୍ଟ ଭିତରୁ ଭିଡି ବାହାର କରିଦେଉଥିଲା ଓ ନିଜ ହାତକୁ ଖାଲି ପେଟ ଉପରେ ପିଟି ଶବ୍ଦ କରୁଥିଲା । ଏହା ଠିକ୍ କୁକୁଡାର ଫଡ୍‌ଫଡ୍ ଶବ୍ଦ ପରି ଶୁଭୁଥିଲା । ଏତେଗୁଡାଏ କୌଶଳ ଦେଖାଇବା ପାଇଁ ମିଶାକୁ ଛୁଟି ସମୟ ଯଥେଷ୍ଟ ହେଉ ନ ଥିଲା । ଆଉ ଏଇଥିପାଇଁ ବେଳେ ବେଳେ ପଢା ମଝିରେ ହିଁ ତା' ଠାରୁ ବିଲେଇର ମିଆଁଉ ବା ଘୁଷୁରୀ ଛୁଆର ଚିଁ ଚିଁ ଶବ୍ଦ ଶୁଭୁଥିଲା ।

''ମିଶା ।'' ଶିକ୍ଷୟିତ୍ରୀ କହୁଥିଲେ । ''ଏ ଚିଁ ଚିଁ ଓ ମିଆଁଉ-ମିଆଁଉ ବନ୍ଦ କର । ମୁଁ ଆଉ ପ୍ରକାରର କୌଣସି କେଁ କାଁ ଶବ୍ଦ ଶୁଣିବାକୁ ଚାହେଁନି । ମିଶା, ଶୁଭିଲା ତୁମକୁ ? ଏ ଭୋକିବା ବନ୍ଦ କର । ତୁମେ କେତେ ଦିନ ଏପରି ଶବ୍ଦ କରୁଥିବ ? କ'ଣ ପୁଣି ଚଢେଇ ପରି ବୋବାଇବା ଆରମ୍ଭ କଲ ? ପୁଣି ଥରେ ଯଦି ଏପରି ଶୁଣିବି, ତେବେ ମୁଁ ତୁମକୁ ଶ୍ରେଣୀରୁ ବାହାର କରିଦେବି ।''

କିନ୍ତୁ, ମିଶାକୁ ଶ୍ରେଣୀରୁ କେବେ ବାହାର କରାଯାଇ ନଥିଲା । ଶିକ୍ଷୟିତ୍ରୀ ତା'ର ଏ ଖେଚଡାମି ପାଇଁ ହସି ହେଉଥିଲେ । ଏପରି କି ସ୍କୁଲର ପ୍ରଧାନ ଶିକ୍ଷକ ବି ସମସ୍ତଙ୍କ ଆଗରେ ତା'ର ଏ ଖେଚଡାମିରେ ନ ହସି ରହିପାରୁ ନଥିଲେ । ଥରେ ପ୍ରଧାନ ଶିକ୍ଷକ ମିଶାକୁ ନିଜ ଅଫିସ୍‌କୁ ଡକାଇ ବହୁତ ଗାଳି ଦେଲେ । ଶେଷରେ ସେ କହିଲେ :

''ତୁମେ ଯାଇପାର । ପୁଣି ଯେପରି କେବେ ତୁମ ପାଦ ଏଠାରେ ପଡିବା ନ ଦେଖେ ।''

ଏଥିପାଇଁ ମିଶା ନିଜ ହାତ ଉପରେ ଛିଡା ହୋଇଗଲା ଓ ପ୍ରଧାନ ଶିକ୍ଷକଙ୍କ ଅଫିସ୍‌ରୁ ହାତ ଉପରେ ଚାଲି ଚାଲି ବାହାରି ଆସିଲା । ଅବଶ୍ୟ, ଏଇ କାରଣରୁ ପ୍ରଧାନ ଶିକ୍ଷକ ତା' ବାପା ଓ ମା'ଙ୍କୁ ଡକାଇଥିଲେ, କିନ୍ତୁ ସମସ୍ତେ ତାଙ୍କୁ ସେତେବେଳେ ହସିବାର ଦେଖି ନେଇଥିଲେ ।

ଦିନେ ସ୍କୁଲ ପରେ ମିଶା କହିଲା :

"ମୁଁ କିପରି ଟ୍ରାମ୍‌କୁ ଅଟକାଇପାରେ, ଦେଖିବ ?"

ସବୁଥର ପରି ପିଲାଏ ପାଟି କଲେ :

"ହଁ ।"

"ଆସ, ମୋ ସାଙ୍ଗରେ ।" ମିଶା କହିଲା ।

ସବୁ ପିଲା ତା' ପଛେ ପଛେ ଚାଲିଲେ । ଟ୍ରାମ୍ ଲାଇନ୍‌ଟା ସ୍କୁଲ ପାଖରେ ଯାଇଥିଲା ।" ତୁମେ ସମସ୍ତେ ଏଇଠି ଠିଆ ହୁଅ ଓ ଦେଖ," ମିଶା କହିଲା ।

ଯେତେବେଳେ ଟ୍ରାମ୍‌ଟା ଦୂରରେ ଦେଖାଦେଲା, ମିଶା ଟ୍ରାମ୍ ଲାଇନ୍ ଉପରେ ଶୋଇ ପଡିଲା । ସେ ନିଜ ମୁଣ୍ଡ ଚାରିପାଖେ ଦୁଇ ହାତକୁ ଘେରାଇ ରଖିଲା । ଟ୍ରାମ୍‌ଟି ଖୁବ୍ ଜୋର୍‌ରେ ଆସୁଥିଲା । ଯେତେବେଳେ ଡ୍ରାଇଭର ଟ୍ରାମ୍ ଲାଇନ୍ ଉପରେ ପିଲାଟିଏ ଶୋଇଥିବାର ଦେଖିଲା, ସେ ହର୍ଣ୍ଣ ବଜାଇଲା । ମିଶା ହଲିଲାନି । ଟ୍ରାମ୍ ବେଳକୁ ବେଳ ପାଖକୁ ଆସୁଥିଲା । ଶବ୍ଦ ବଢୁଥିଲା । ସବୁ ପିଲା ଭୟରେ ସତେ ଯେପରି କାଠ ପାଲଟି ଯାଇଥିଲେ । ଟ୍ରାମ୍‌ଟି ତା'ର ଅତି ପାଖକୁ ଆସି ଅଟକିଲା । ଗାଡିର ଶବ୍ଦ ଯେମିତି ବନ୍ଦ ହୋଇଛି, ମିଶା ସଙ୍ଗେ ସଙ୍ଗେ ଉଠି ଗୋଟିଏ ଗଳି ଭିତରକୁ ଦଉଡିଲା । ଡ୍ରାଇଭର କେବଳ ନିଜ ରାଗ ହିଁ ଦେଖାଇ ପାରିଲା । ଟ୍ରାମ୍ ଚାଲିଗଲା । ସବୁ ପିଲା ମିଶାକୁ ଘେରି ଗଲେ ।

"ତତେ ଡର ଲାଗିଲାନି ?" ସେମାନେ ପଚାରିଲେ ।

"ଏଥିରେ ଡରିବାର କ'ଣ ଅଛି ?"

"ଯଦି ଟ୍ରାମ୍ ଅଟକି ନଥାନ୍ତା, ତେବେ ?"

"ତେବେ ସେ ଜେଲ୍ ଯାଇଥାନ୍ତା ।"

"କିନ୍ତୁ, ଯଦି ସେ ତତେ ଧରି ନେଇଥାନ୍ତା ?"

"ତା' ଟ୍ରାମ୍ ଛାଡିବାର ଅଧିକାର ନାହିଁ ।"

ମିଶା ଏପରି ଉତ୍ତର ଦେଉଥିଲା ଯେପରି ଆଗରୁ ହିଁ ସେ ସବୁ ଭାବି ଠିକ୍ କରି ସାରିଥିଲା ।

ତା'ପରେ ପ୍ରତିଦିନ ଆମ ଶ୍ରେଣୀର ଜଣେ ପରେ ଜଣେ ପିଲା ଏହିପରି ଟ୍ରାମ୍ ରୋକିବାରେ ଲାଗିଲେ । ପୁଣି ଦିନେ କିଏ ଜଣେ ଝିଅମାନଙ୍କୁ ବି ଏହା ଦେଖିବା ପାଇଁ ଡାକି ଆଣିଲା । ଶେଷରେ ଏମିତି ଦିନେ ଆସିଲା, ଯେତେବେଳକୁ ବାପାଙ୍କ ଛଡା ସମସ୍ତେ ଟ୍ରାମ୍‌କୁ ଥରେ ଥରେ ରୋକି ସାରିଥିଲେ । ସବୁ ଝିଅଙ୍କୁ ଜଣାଥିଲା, ବାପାଙ୍କୁ ବି ଦିନେ ଟ୍ରାମ୍ ଲାଇନ୍ ଉପରେ ଶୋଇବାକୁ ପଡିବ । ଯେଉଁଦିନ ଜଣାପଡିଲା, ବାପା ଟ୍ରାମ୍ ଲାଇନ୍ ଉପରେ ଶୋଇବେ, ସେଦିନ ଅନ୍ୟ ଶ୍ରେଣୀର ଝିଅମାନେ ମଧ୍ୟ ଦେଖିବାକୁ ଆସିଲେ । ସମସ୍ତେ ଜାଣିଥିଲେ ବାପା ଚୁପ୍‌ଚାପ୍ ପିଲା । ସେ କିପରି ଟ୍ରାମ୍ ଅଟକାଇବେ, ତାହା ଦେଖିବା ପାଇଁ ସମସ୍ତେ ଆସି ଜମା ହେଲେ । ସେ ଦିନ ଏତେ ଭିଡ ଥିଲା, ଯେ ଡ୍ରାଇଭର ଦୂରରୁ ହିଁ ସେମାନଙ୍କୁ ଦେଖି ନେଲା । ବାପା ଲାଇନ୍ ଉପରେ ଆଖି ବନ୍ଦ କରି ଓ କାନରେ ହାତ ଦେଇ ଶୋଇ ରହିଥିଲେ । ଡ୍ରାଇଭର ଟ୍ରାମକୁ ଧିରେ ରଖିଲା ଓ ଆସ୍ତେ ଓହ୍ଲାଇଲା । ସେ ବାପାଙ୍କ ଆଡକୁ ଦଉଡି ଆସିଲା । ପିଲା-ବାପା ଭାବୁଥିଲେ ଟ୍ରାମ୍ ନ ଅଟକି, ତା'ଙ୍କ ଉପର ଦେଇ ଚାଲିଗଲା । ସେ ବୁଝି ପାରି ନଥିଲେ, ତାଙ୍କୁ ଯିଏ ଝିଙ୍କାଟଣା କରୁଥିଲା, ସେ ନିଜେ ଡ୍ରାଇଭର ହିଁ ଥିଲା, ସେ ପାଟି କରି କହୁଥିଲା :

''ହଁ । ଆଜି ତୁ ଧରା ପଡିଛୁ ।''

ସବୁ ପିଲା ଡରରେ ଏଣେ ତେଣେ ଦଉଡି ଚାଲିଗଲେ । କେବଳ ମିଶା ଗଳି ପାଖରୁ ପାଟି କରି କହିଲା :

''ତା'ର କିଛି ଭୁଲ୍ ନାହିଁ । ତା'କୁ ଛାଡିଦିଅ ।''

ହେଲେ ତା' କଥା କେହି ଶୁଣିଲେନି ।

ବାପାଙ୍କୁ ପାଖ ଷ୍ଟେସନକୁ ନିଆଗଲା । ସେଠାରେ ତାଙ୍କର ନାଁ ଓ ଠିକଣା ଲେଖାଗଲା । ସେଠାକୁ ଜେଜେ, ଜେଜେମା ଓ ପ୍ରଧାନ ଶିକ୍ଷକଙ୍କୁ

ଡକାଗଲା । ପୁଣି ବାପାଙ୍କୁ ଘରେ ଦଣ୍ଡ ଦିଆହେଲା ଓ ସ୍କୁଲରେ ସଭିଙ୍କ ଆଗରେ ଲଜ୍ଜିତ କରାଗଲା । ସ୍କୁଲ ପତ୍ରିକାରେ ତାଙ୍କ ବିଷୟରେ ଗୋଟିଏ ଲେଖା ବାହାରି ଥିଲା । ପ୍ରଧାନଶିକ୍ଷକ, ଢେଙ୍କେ ଓ ଢେଙ୍କେମା'ଙ୍କ ଧାରଣା ଥିଲା, ଏକା ବାପା ହିଁ ସବୁଦିନ ଟ୍ରାମ୍ ଲାଇନ୍ ଉପରେ ଶୋଇ ଟ୍ରାମ୍‌କୁ ଅଟକାଉଥିଲେ । ବାପା ସେମାନଙ୍କୁ ଏହା ଜଣାଇବାକୁ ଭାବୁଥିଲେ ଯେ, ମିଶା, ସିକୋସ୍କି ଓ ଅନ୍ୟ ସବୁ ପିଲା ଥରେ ଥରେ ଟ୍ରାମ୍ ଅଟକାଇଥିଲେ କିନ୍ତୁ ସେ ସେମାନଙ୍କୁ ବିରୁଦ୍ଧରେ କହି ନଥିଲେ ।

ଅନ୍ୟ ସବୁ ପିଲା, ଅନେକ ଦିନ ପର୍ଯ୍ୟନ୍ତ ଏ ଘଟଣାକୁ ନେଇ ବାପା ଥଟ୍ଟା କରୁଥିଲେ ଓ ହସୁଥିଲେ, କାହିଁକି ନା ବାପା ହିଁ ଏକମାତ୍ର ପିଲାଥିଲେ, ଯିଏ ଧରା ପଡିଯାଇଥିଲେ । ଏପରିକି ତାଙ୍କ ସାଙ୍ଗ ମିଶା ବି କହିଥିଲା :

''ଯଦି ତତେ କୌଣସି କାମ କରିବାର ଆସୁନି, ତେବେ ସେଥିରେ କାହିଁକି ହାତ ଦେଉଛୁ ?''

ତା'ପରେ ଆଉ କେହି କେବେ ଟ୍ରାମ୍ ଲାଇନ୍ ଉପରେ ଶୋଇ ନଥିଲେ । ବାପା ସେତେବେଳେ ଧରା ପଡିଥିଲେ ବୋଲି ଅବଶ୍ୟ ଖୁସି ଥିଲେ, କାରଣ ଟ୍ରାମ୍ କାହାରି ଉପରେ ମାଡି ଯାଇ ନଥିଲା । ଏହା ପ୍ରକୃତରେ ଏକ ଚମତ୍କାର ଘଟଣା ଥିଲା ।



# ବାପା ସାପ ମାରିଲେ

ପିଲାବେଳେ, ଥରେ ବାପା ସାପଟିଏ ମାରିଥିଲେ । ଘଟଣାଟି ଏପରି ଥିଲା । ଦିନେ ସ୍କୁଲ ଶେଷରେ ତାଙ୍କ ଶିକ୍ଷୟିତ୍ରୀ କହିଲେ :

''ପିଲେ । କାଲି ଆମେ ବଣକୁ ବୁଲିଯିବା । ଦେଖ.... ବସନ୍ତ ଋତୁ ଆସିଲାଣି । ଆମେ ସେଠାରେ ଶାଗୁଆ ଘାସ ଉପରେ ଚାଲିବା ଓ କଅଁଳ ଖରାରେ ଖେଳିବା । ତୁମ ଭିତରୁ କିଏ କିଏ ଯିବ ?''

ସବୁ ପିଲା ହାତ ଉପରକୁ ଉଠାଇଲେ । ବାପା ବି ହାତ ଟେକିଲେ । ଶିକ୍ଷୟିତ୍ରୀ ଅଳ୍ପ ହସି କହିଲେ ,''ଆଚ୍ଛା । କିଏ ଯିବାକୁ ଚାହଁ ନାହିଁ ?''

ଏଥର ବି ସବୁ ପିଲା ହାତ ଉଠାଇଲେ । ବାପା ବି ସେଇଆ କଲେ । ଶିକ୍ଷୟିତ୍ରୀ ଆଚମ୍ବିତ ହୋଇ ପଚାରିଲେ :

"ଏହାର ଅର୍ଥ କ'ଣ ? ତୁମେ ଜଙ୍ଗଲରେ ବୁଲିବାକୁ ଚାହୁଁଛ ନା ନାହିଁ ?"

"ଆମେ ଯିବାକୁ ଚାହୁଁ ।"ପିଲାଏ ପାଟିକରି କହିଲେ ।

"ତେବେ ତୁମେ ନ ଯିବାକୁ କାହିଁକି ହାତ ଉଠାଇଲ ?" ଶିକ୍ଷୟିତ୍ରୀ ପଚାରିଲେ ।

କେହି ତାଙ୍କ କଥା ବୁଝି ପାରିଲେନି । ଶେଷରେ ଜଣେ ଝିଅ କହିଲା :

"କଥା କ'ଣ କି ..... ଆମକୁ ହାତ ଉଠାଇବାକୁ ଭଲ ଲାଗେ ।"

ଏହା ଶୁଣି ସବୁ ପିଲା ହସି ଉଠିଲେ । ଶିକ୍ଷୟିତ୍ରୀ ବି ହସିଲେ । ସେ କହିଲେ :

"ତୁମେ ସବୁ ପାଗଳ । ଆଚ୍ଛା, ଦ୍ୱିପହର ପାଇଁ ସମସ୍ତେ ଖାଇବା ନେଇ ଆସିଥିବ । ଜଙ୍ଗଲରେ ଖାଇବା ଜିନିଷ ବିକ୍ରି ହୁଏନି । ଆଜି ସ୍କୁଲ ପଢ଼ା ଏତିକିରେ ସରିଲା ।"

ସବୁ ପିଲା ଠିଆ ହୋଇଗଲେ । ଅଚାନକ ବାପା ପୁଣି ଥରେ ହାତ ଉପରକୁ ଉଠାଇଲେ ।

"ପୁଣି କ'ଣ ହେଲା ?" ଶିକ୍ଷୟିତ୍ରୀ ପଚାରିଲେ । ହାତ ଉଠାଇବାକୁ ତୁମକୁ ସତରେ ଭଲ ଲାଗେ । ଏହା ସତ ନା ?"

ସମସ୍ତେ ହସି ଉଠିଲେ । ବାପା ବି ହସିଲେ ଓ ପଚାରିଲେ "ଦିଦି, ମୁଁ ମୋର କୋଦାଳଟି ନେଇ ପାରିବି ?"

ଏହା ଶୁଣି ସବୁ ପୁଅ, ଝିଅ ପୁଣି ହସିଲେ । ଶିକ୍ଷୟିତ୍ରୀ କହିଲେ :

"ତୁମମାନଙ୍କୁ ହାତ ଉଠାଇବାକୁ ଭଲ ଲାଗେ । ତେଣୁ ଏହି ପ୍ରଶ୍ନ ଉପରେ ବି ହାତ ଉଠାଇବ । ସେ କୋଦାଳ ନେଇ ଯିବ ... ଏହା କିଏ କିଏ ଚାହୁଁଛ ?"

ସଭିଏଁ ହାତ ଉଠାଇଲେ ।

"ତାହା ହେଲେ ସମସ୍ତେ ରାଜି ।" ଶିକ୍ଷୟିତ୍ରୀ କହିଲେ ।

ତା' ପରଦିନ ବଣକୁ ଗଲାବେଳେ ବାପା ନିଜ ସାନ କୋଦାଳଟି ବି ନେଇଥିଲେ । ସେ ବହୁତ ଖୁସି ଥିଲେ; କାରଣ ସମସ୍ତେ ତାଙ୍କୁ କୋଦାଳ ନେବା ସପକ୍ଷରେ ଭୋଟ ଦେଇଥିଲେ ।

ସାରା ଜଙ୍ଗଲ ସୁନ୍ଦର ଦିଶୁଥିଲା । ଚାରିଆଡେ ଶାଗୁଆ ଗଛ, ପତ୍ର ଓ ଘାସ ଦେଖି ବାପା ଆନନ୍ଦରେ ଚାହିଁ ରହିଥିଲେ ।

"ପିଲାଏ, ଏଇ ଗଛକୁ ଦେଖ," ଶିକ୍ଷୟିତ୍ରୀ କହିଲେ । ଏଇ ଗଛର ନାଁ କିଏ କହି ପାରିବ ?

"ଏହା ପାଇନ୍ ଗଛ ।" ସବୁ ପିଲା ଏକା ଥରେ ପାଟି କରି କହିଲେ ।

ଜଣେ ଝିଅକୁ ସବୁବେଳେ ହାତ ଉଠାଇବାକୁ ଭଲ ଲାଗୁଥିଲା । (ତା'ର ନାଁ ଓଲ୍ୟା) । ସେ କହିଲା :

"ପୁରୁଣା ଓ ବଢ଼ିଆ ପାଇନ୍ ଗଛ ..... ।"

କେହି ତା' କଥାର ଅର୍ଥ ବୁଝିଲେନି । ଶିକ୍ଷୟିତ୍ରୀ ବି ଆଶ୍ଚର୍ଯ୍ୟ ହେଲେ । ପୁଣି ସେ ପଚାରିଲେ :

"ଏହା କେଉଁ ଗଛ ?"

ସମସ୍ତେ ପୁଣି ପାଟି କଲେ :

"ଏହା ଗୋଟିଏ ଛୋଟ ଭୋଜ ଗଛ ।"

ବାପା ଦେଖିଲେ ଓଲ୍ୟା କିଛି କହିବାକୁ ମୁହଁ ଖୋଲୁଛି । ସେ ଧୀରେ କହିଲେ :

"ଏହା ଗୋଟିଏ ବଢ଼ିଆ ଯୁବ ଭୋଜ ଗଛ ।"

ଓଲ୍ୟା ଚିଡିଗଲା । ସେ ବାପାଙ୍କୁ ଜିଭ ଦେଖାଇ ଖତେଇ ହେଲା ।

ଏଥର ବାପା ଖୁବ୍ ଜୋର୍‌ରେ କହିଲେ :

"କି ଚମତ୍କାର ଭାଷାରେ କହିଲୁରେ ।"

ସମସ୍ତେ ଜୋରରେ ହସି ଉଠିଲେ । କିନ୍ତୁ ଶିକ୍ଷୟିତ୍ରୀ କହିଲେ :

"ଯେଉଁ ପିଲା ପଢା ମଝିରେ କଥା କହିବ, ତା'କୁ ଜଙ୍ଗଲରୁ ବାହାର କରିଦେବି ।"

ସେ ଏହି କଥାଟି ଏତେ ଦୃଢ ଭାବରେ କହିଲେ ଯେ ସମସ୍ତେ ଚୁପ୍ ହୋଇଗଲେ । ହେଲେ, ଦିଦି ପୁଣି ହସିଦେଲେ ।

ତା'ପରେ ସେ ପିଲାଙ୍କୁ ଭିନ୍ନ ଭିନ୍ନ ଗଛ ବିଷୟରେ କହିଲେ । ଏହି ଗଛ ସବୁ ଆମର ଉତ୍ତର ଓ ଦକ୍ଷିଣ ଭାଗରେ ଥିବା ଜଙ୍ଗଲରେ ଦେଖିବାକୁ ମିଳୁଥିଲା ।

ଏ ସମୟରେ କିଏ ଜଣେ ବିଲୁଆଟିଏ ଦେଖି ପାଟି କଲା । ବିଲୁଆ ନାଁ ଶୁଣୁ ଶୁଣୁ ସମସ୍ତେ ଏକା ସ୍ୱରରେ ଗାଇବାରେ ଲାଗିଲେ :

*"ବିଲୁଆ ନନାରେ ବିଲୁଆ ନନା ।*
*ଘର ପୋଡିଗଲା ପଛକୁ ଅନା ।"*

ସବୁ ପିଲା ତା' ସହ ତାଳି ବଜାଇ ଗାଇବାରେ ଲାଗିଲେ । ଏ ସମୟରେ ସମସ୍ତଙ୍କର ଆଣିଥିବା ଖାଦ୍ୟ କଥା ମନେ ପଡିଲା । ସେମାନଙ୍କୁ ଭୋକ ଲାଗିଲା । ଜଙ୍ଗଲରେ ଖାଇବାରେ ଏକ ଅଲଗା ମଜା ଥିଲା । ସେମାନେ ତଳେ କିଛି ତାଳପତ୍ର ପକାଇ, ତା' ଉପରେ ବସିଗଲେ । ପ୍ରତ୍ୟେକେ ନିଜ ଖାଦ୍ୟ ଅନ୍ୟକୁ ଖୁଆଇଲେ । ଏଥର ଶିକ୍ଷୟିତ୍ରୀ ତାଙ୍କ ମୁଣିରୁ ମିଠା ଡବାଟିଏ କାଢିଲେ । ଏହାକୁ ଦେଖି ସମସ୍ତଙ୍କ ମୁହଁରେ ହସ ଫୁଟି ଉଠିଲା ।

ଅଚାନକ କିଏ ଜଣେ ଚିତ୍କାର କଲା :

"ସାପ ! ସାପ !"

ଓଲ୍ୟା ଏପରି ଚିତ୍କାର କରୁଥିଲା । ସେ ବାପାଙ୍କ ପାଖରେ ବସିଥିଲା । ସେ ଗୋଟିଏ ଡିଆଁରେ ଠିଆ ହୋଇଗଲା ଓ ଖୁବ୍ ଜୋରରେ ପାଟି କରିବାରେ ଲାଗିଲା ।

"ମୋତେ ବଞ୍ଚାଅ । ମାଆ ଲୋ... ।"

ବାପା ବି ଭୟରେ ଠିଆ ହୋଇଗଲେ । ସେ ଦେଖିଲେ, ଓଲ୍ୟାର ପାଦ ପାଖରେ ସାପଟିଏ ଯାଉଛି । ସେ ତାଙ୍କ ଜୀବନରେ ଏଇ ପ୍ରଥମ ଥର ସାପ ଦେଖୁଥିଲେ । ସେ ଖୁବ୍ ଡରିଗଲେ । ନିଜ କୋଦାଳରେ ସାପକୁ ସେ ଖୁବ୍ ଜୋର୍‌ରେ ମାରିଲେ ଓ ଦୁଇ ଖଣ୍ଡ କରିଦେଲେ । ଦୁଇଖଣ୍ଡଯାକ ଛଟପଟ ହେବାକୁ ଲାଗିଲା । ଓଲ୍ୟା ତଥାପି ପାଟି କରୁଥିଲା । ସବୁପିଲା ଭୟରେ ପାଟି କରୁଥିଲେ । କିନ୍ତୁ ଶିକ୍ଷୟିତ୍ରୀ ପାଟି କରୁ ନଥିଲେ । ସେ ବାପାଙ୍କୁ ଖୁସିରେ ଚାହିଁ ରହିଥିଲେ । ବାପା ସାପକୁ ମାରିବାରେ ଲାଗିଥାନ୍ତି । ପ୍ରଥମେ ସେ ତାକୁ ଦୁଇରୁ ଚାରିଖଣ୍ଡ କଲେ । ପୁଣି ଚାରିରୁ ଆଠ ଖଣ୍ଡ କଲେ । ସେ ଏହାକୁ ବୋଧହୁଏ ଷୋହଳ କି ବତିଶ ଖଣ୍ଡ କରିଥାନ୍ତେ କିନ୍ତୁ ଶିକ୍ଷୟିତ୍ରୀ ଆସି ତାଙ୍କୁ ଧରିନେଲେ ଓ କହିଲେ :

ଏତିକି ହୋଇଥାଉ । ଏତିକି ହୋଇଥାଉ । ଏଇଟା ଢମଣାଟାଏ । ବିଷାକ୍ତ ନୁହଁ । ବରଂ ଏହା ଆମ ପାଇଁ ଉପକାରୀ ।

ବାପା ତା'କୁ ଖଣ୍ଡ କରିବା ବନ୍ଦ କରିଦେଲେ । ଝିଅମାନେ ପାଟି କରିବା ବନ୍ଦ କରିଲେ । କିନ୍ତୁ ଓଲ୍ୟା ଚୁପ୍ ହେଉ ନଥାଏ ।

''ଏଇଟା ଢ଼ମଣା । ଣମଣା ସାପ ।'' ସେ ପାଟି କଲା । ସବୁ ପିଲା ପୁଣି ପାଟି କରିବା ଆରମ୍ଭ କରି ଦେଲେ ।

''ବଞ୍ଚାଅ । ଆରେ ବଞ୍ଚାଅ ।'' ସେମାନେ ପାଟି କରୁଥିଲେ

''ମାଆ ଲୋ, ବାପା ଲୋ । ବଞ୍ଚାଅ । ସାପ ।''

''ଚୁପ୍ ରୁହ, ସମସ୍ତେ ।'' ଶିକ୍ଷୟିତ୍ରୀ ପାଟିକଲେ । ତାଙ୍କ ଚେତାବନୀ ଶୁଣି ସମସ୍ତେ ଚୁପ୍ ହୋଇଗଲେ, ଏଥର ସେ ନରମ ଗଳାରେ କହିଲେ :

ଢ଼ମଣା ସାପ ବିଷାକ୍ତ ନୁହଁ । ଏହା ଏକ ଉପକାରୀ ସାପ ଅଟେ । ତୁମକୁ ଢ଼ମଣା ଓ ଅନ୍ୟ ବିଷାକ୍ତ ସାପ ଭିତରେ ତଫାତ୍ ଜାଣିବାକୁ ହେବ । ଏହା ବି ଜାଣି ରଖ, କ'ଣ ପାଇଁ ପାଟି କରୁଛ, ତାହା ନଜାଣି ପାଟି କରିବା

ଏକ ରକମର ପାଗଳାମୀ  ଅଟେ । ଆଉ ଯଦି କେହି ସାପଟିକୁ ବିଷାକ୍ତ ବୋଲି ଭାବେ ଓ ଡରି ଚାଲି ଯାଏନି ବରଂ ଛିଡା ହୋଇଯାଇ ନିଜ ସାଙ୍ଗକୁ ବଞ୍ଚାଇବାକୁ ଚେଷ୍ଟା କରେ, ତାହାହେଲେ ତା'କୁ ଦେଖି ହସିବାର କୌଣସି କାରଣ ନାହିଁ । ତାହାଛଡା ଏଥିପାଇଁ ସାପଟିକୁ ଶହେ ଖଣ୍ଡ କରିବା ବି ଦରକାର ନାହିଁ ।

ଏହା ଶୁଣି ସବୁ ପୁଅଝିଅ ହସି ଉଠିଲେ । ବାପା ନିଜ କୋଦାଳଟିକୁ ପାଖରେ ଥିବା ବୁଦା ଆଡକୁ ଫିଙ୍ଗି ଦେଲେ । ଏହାପରେ ବହୁତ ଦିନ ପର୍ଯ୍ୟନ୍ତ ସବୁ ପିଲା ତାଙ୍କୁ ଥଟ୍ଟା କରି କହୁଥିଲେ, "ଢ଼ମଣା । ଆରେ ଢ଼ମଣା  ସାପ । ବଞ୍ଚାଅ । ଆରେ ବଞ୍ଚାଅ ।" ବାପା ଭାବୁଥିଲେ, କେବଳ ଓଲ୍ୟା ତାଙ୍କୁ ଥଟ୍ଟା କରିବାର ଥିଲା । ଏହାପରଠୁଁ ବାପା ତାଙ୍କ ଜୀବନରେ କେବେ ବି ସାପ ମାରି ନ ଥିଲେ ।



## ବାପା ଜର୍ମାନ୍ ଭାଷା ଶିଖିଲେ

ବାପା ଯେବେ ପିଲା ଥିଲେ, ଶ୍ରେଣୀରେ ତାଙ୍କୁ ଭଲ-ଖରାପ ସବୁ ପ୍ରକାରର ନମ୍ବର ମିଳୁଥିଲା । ମାତୃଭାଷାରେ 'ଭଲ' ମିଳିଥିବା ବେଳେ, ଗଣିତରେ 'ସାଧାରଣ', ହସ୍ତାକ୍ଷରରେ 'ଖରାପ' ଓ ଚିତ୍ରାଙ୍କନରେ 'ବହୁତ ଖରାପ' ମିଳିଥିଲା । ଛବି ଶିକ୍ଷକ ତାଙ୍କୁ କହି ଦେଇଥିଲେ, 'ଯଦି ତୁମେ ଭଲ ଛବି ଆଙ୍କିବାକୁ ଚେଷ୍ଟା ନ କରିବ, ତେବେ ତୁମକୁ 'ଅତିରିକ୍ତ ଖରାପ' ଦେବି ।'

ଦିନେ ଶ୍ରେଣୀକୁ ଜଣେ ନୂଆ ଶିକ୍ଷୟିତ୍ରୀ ଆସିଲେ । ସେ ନିଜ ନାମ କହିବାପରେ ହସିହସି ପିଲାଙ୍କୁ ସେମାନଙ୍କ ନାଁ ପଚାରିଲେ । ପିଲାମାନେ ଖୁବ୍ ପାଟି କରି ନିଜ ନିଜ ନାଁ କହିବାରେ ଲାଗିଲେ ।

ପିଲାମାନେ ଏତେ ପାଟି କଲେ ଯେ ଶିକ୍ଷୟିତ୍ରୀ କାନରେ ଆଙ୍ଗୁଠି ଦେଇଦେଲେ । ପିଲା ବି ଏଥର ପାଟି ବନ୍ଦ କରିଦେଲେ । ତା'ପରେ ଶିକ୍ଷୟିତ୍ରୀ କହିଲେ :

"ମୁଁ ତୁମକୁ ଜର୍ମାନ ଭାଷା ପଢାଇବି । କ'ଣ ତୁମେ ଆଗ୍ରହୀ ?"

ହଁ । ହଁ । ସବୁ ପିଲା ଆନନ୍ଦରେ କହିଲେ ।

ଏଥର, ସବୁ ପିଲାଙ୍କ ସହ ବାପା ଜର୍ମାନ ଶିଖିବାକୁ ଲାଗିଲେ । ପହିଲେ ପହିଲେ ଏହା ବହୁତ ମଜା ଲାଗୁଥିଲା । ଚଉକିକୁ "ଦେରଷ୍ଟୁଲ୍", ମେଜକୁ "ଦେର ତିଶ୍", ବହିକୁ "ଦାସ୍ ବୁଖ୍", ପୁଅକୁ "ଦେର୍ କାବେ", ଝିଅକୁ "ଦାସ୍ ମେଦଖେନ୍" କହିବାକୁ ମଜା ଲାଗୁଥିଲା ।

ଏହାକୁ ଶିଖିବା ଏକ ଖେଳ ପରି ମଜାଦାର୍ ଥିଲା । ସବୁପିଲା ଏଥିରେ ମନଦେଇ ଲାଗିପଡିଲେ । ଶିକ୍ଷୟିତ୍ରୀ କିନ୍ତୁ ଯେତେବେଳେ ବ୍ୟାକରଣ ପଢାଇବାକୁ ଆରମ୍ଭ କଲେ, ସେତେବେଳେ ଏହି କାବେ ଓ ମେଦ୍‌ଖେନ ଆଦି ଶବ୍ଦ କାଠିକର ମନେ ହେଲା । ସେତେବେଳେ ବାପା ବୁଝିଲେ ଜର୍ମାନ୍ ଶିଖିବାକୁ ହେଲେ ତାଙ୍କୁ ପଢିବାକୁ ବି ହେବ । ଏବେ ଏହା ଆଉ କୌଣସି ଖେଳ ନଥିଲା । ଗଣିତ, ସାହିତ୍ୟ ପରି ଏହା ମଧ୍ୟ ଏକ ବିଷୟ ଥିଲା । ତାଙ୍କୁ ଏକା ଥରେ ତିନୋଟି ଜିନିଷ ଶିଖିବାକୁ ହେଉଥିଲା - ଜର୍ମାନ୍ ଲେଖିବା, ଜର୍ମାନ୍ ପଢିବା ଓ ଜର୍ମାନ୍ କହିବା । ପଢାଇଲାବେଳେ ପିଲାଙ୍କୁ ଯେପରି ଭଲ ଲାଗିବ, ସେଥିପାଇଁ ଶିକ୍ଷୟିତ୍ରୀ ପୂରା ଚେଷ୍ଟା କରୁଥିଲେ । ସେ ଜର୍ମାନ୍ ଭାଷାର ସୁନ୍ଦର ଓ ମଜାଦାର ଗପ ବହି ଆଣୁଥିଲେ । ଯେଉଁ ପିଲାମାନେ ଆଗ୍ରହର ସହ ପଢୁଥିଲେ, ତାଙ୍କୁ ଏହା ଖୁବ୍ ଭଲ ଲାଗୁଥିଲା । କିନ୍ତୁ ଯେଉଁମାନେ ପଢୁନଥିଲେ

- ସେମାନେ ଅନ୍ୟମାନଙ୍କ କଥା ବୁଝି ପାରୁନଥିଲେ । ତାଙ୍କୁ ଏହି ଶ୍ରେଣୀଟିରେ ଜମା ମଜା ମିଳୁନଥିଲା । ସେମାନେ କେବେ କେବେ ''ଦାସ୍ ବୁଖ୍''କୁ ପଢୁଥିଲେ ଓ କିଛି ପଚାରିଲେ, ''ଦେର୍ ତିଶ୍'' ପରି ଚୁପ୍ ହୋଇ ଠିଆ ହେଉଥିଲେ ।

ଦିନେ ଜର୍ମାନ୍ ଭାଷା ପଢା ଆରମ୍ଭ ହେବା ଆଗରୁ ଶ୍ରେଣୀରେ ଗୋଟିଏ ଗୁଞ୍ଜରଣ ଖେଳି ଯାଉଥିଲା : ''Ich habe spazieren !'' (ଇଖ୍ ହାବେ ସ୍ପାଜିଏରେନ୍), ଯାହାର ଅର୍ଥ - ''ମୋର ବାହାରକୁ ଯିବାର ଅଛି ।'' କିନ୍ତୁ ସ୍କୁଲ ଭାଷାରେ ଏହା ଅର୍ଥ - ''ଚାଲ, ଏଠୁ ଖସି ଚାଲିଯାଅ ।'' ଏହା ଶୁଣିବା ସାଙ୍ଗକୁ କିଛି ପିଲା ଏଥିରେ ସାମିଲ୍ ହୋଇ ଯାଉଥିଲେ । ବିଚାରୀ ଶିକ୍ଷୟିତ୍ରୀ ଶ୍ରେଣୀକୁ ଆସି ଦେଖୁଥିଲେ । ସବୁ ପୁଅ ''ସ୍ପାଜିରେନ୍'' କରୁଛନ୍ତି ଓ କେବଳ ଝିଅମାନେ ପଢିବା ପାଇଁ ଶ୍ରେଣୀରେ ବସି ରହିଛନ୍ତି । ଏଥିପାଇଁ ସେ ବହୁତ ଦୁଃଖ କରୁଥିଲେ । ବାପା ବି ''ସ୍ପାଜିରେନ୍'' କରିବା ପିଲାଙ୍କ ଭିତରେ ଥିଲେ ।

ସେ ଶିକ୍ଷୟିତ୍ରୀଙ୍କୁ ଦୁଃଖ ଦେବାପାଇଁ ଶ୍ରେଣୀରୁ ଖସି ଯାଉ ନଥିଲେ । ପ୍ରଧାନ ଶିକ୍ଷକ, ଶିକ୍ଷୟିତ୍ରୀ ଓ ଅନ୍ୟ ଶିକ୍ଷକମାନଙ୍କଠୁ ଲୁଚି ରହିବାରେ ତାଙ୍କୁ ମଜା ଲାଗୁଥିଲା । ଶ୍ରେଣୀରେ ଶିକ୍ଷୟିତ୍ରୀଙ୍କ ପ୍ରଶ୍ନ "Haben Sie ein Federmesser" (ହାବେନ୍ ଜୀ ଆଇନ୍ ଫେଦେର୍ମେସ୍ସର୍) ଥିଲା : ଅର୍ଥ ''କ'ଣ ତୁମ ପାଖରେ ଛୁରୀ ଅଛି ?'' - ଏହାର ଉତ୍ତରରେ ଧୀରେ ଛିଡା ହୁଅ ଓ କୌଣସି ପ୍ରକାରେ "Ich nicht" (ଇଃ ନିଖ୍ତ) ଅର୍ଥାତ୍ ''ମୁଁ ନୁହେଁ.....'' କହିଦେଇ ଶ୍ରେଣୀ ବାହାରେ ଯାଇ ଲୁଚିବାଟା ତା'ଙ୍କୁ ଭଲ ଲାଗୁଥିଲା । ସବୁ ପିଲା ଏମିତି ଉତ୍ତର ଶୁଣି ହସୁଥିଲେ । ନିଜ କଥା ପାଇଁ ନିଜେ ହସିବା, ବାପାଙ୍କୁ ଭଲ ଲାଗୁ ନଥିଲା । ସେ ଅନ୍ୟମାନଙ୍କ କଥାରେ ହସିବାକୁ ଭଲ ପାଉଥିଲେ । ବାପା ସତର୍କ ଥିଲେ ପଢାପଢି ଠିକ୍ ଭାବେ କରିଥାଆନ୍ତେ । କିନ୍ତୁ ସେ ଶିକ୍ଷୟିତ୍ରୀଙ୍କ ଉପରେ ଅସନ୍ତୁଷ୍ଟ ଥିଲେ । ଜର୍ମାନ୍ ଭାଷା ବି ତାଙ୍କୁ ଭଲ ଲାଗୁ ନଥିଲା । ତେଣୁ ବାପା କେବେ ବି ସେହି ଢାଞ୍ଚାରେ ଜର୍ମାନ୍ ଭାଷା

ପଢିଲେନି, ଯେପରି ପଢିବା ଦରକାର ଥିଲା । ପରେ ଅନ୍ୟ ସ୍କୁଲରେ ସେ ଫରାସୀ ବି ଠିକ୍ ରୂପେ ପଢିଲେନି । ପୁଣି କଲେଜରେ ଇଂରାଜୀ ବି ମନ ଦେଇ ପଢିଲେନି । ଆଉ ତା'ର ଫଳ ହେଲା - ସେ ଗୋଟିଏ ବି ବିଦେଶୀ ଭାଷା ଶିଖି ପାରିଲେନି । ଏବେ ସେ ଅନୁଭବ କରୁଛନ୍ତି ଯେ ପ୍ରକୃତ କ୍ଷତି ତାଙ୍କ ନିଜର ହେଲା । ତାଙ୍କ ମନପସନ୍ଦର ବହୁତ ଭଲ ବହି ଏହି କାରଣରୁ ସେ ପଢି ପାରିଲେନି, ଯାହା ଏ ସବୁ ଭାଷାରେ ଲେଖାଯାଇଛି । ଅନେକ ସମୟରେ ବାପାଙ୍କୁ ଅନ୍ୟ ଦେଶର ଲୋକଙ୍କ ସହ ପରିଚିତ କରାଯାଏ । ସେମାନେ ବାପାଙ୍କ ମାତୃଭାଷା (ଋଷ ଭାଷା) ଭଲ କହି ପାରନ୍ତି ନି, କିନ୍ତୁ ସେମାନେ ଏଇ ଭାଷା ପଢନ୍ତି ଓ ବାପାଙ୍କୁ ପଚାରନ୍ତି : "Sprechen Sie Deutch ?", (ଆପଣ ଇଂରାଜୀ କହି ପାରନ୍ତି କି ?) ବା "Parles vous Francais" (ଆପଣ ଫ୍ରେଞ୍ଚଭାଷା କହିପାରନ୍ତି ?) ବାପା କେବଳ ଧୀରେ ମୁଣ୍ଡ ହଲାଇ 'ନା' କରନ୍ତି । ସେ କେବଳ ଏହି କେଇ ପଦ କହନ୍ତି : "Ich nicht" ଆଉ ସେଥିପାଇଁ ସେ ନିଜେ ଲଜ୍ଜିତ ଅନୁଭବ କରନ୍ତି ।



# ବାପା ଦୁଇଟି ପ୍ରବନ୍ଧ ଲେଖିଲେ

ପିଲାବେଳେ ବାପାଙ୍କର ଘର ପାଖରେ ତାଙ୍କର ଜଣେ ସାଙ୍ଗ ରହୁଥିଲା । ତା'ର ନାଁ ବାସ୍ୟା ସେରେଦିନ୍ । ସେ ଦୁହେଁ ସାଥି ହୋଇ ସ୍କୁଲ ଯାଉଥିଲେ ଓ ସାଥି ହୋଇ ଫେରୁଥିଲେ । ସେମାନେ ସ୍କୁଲରେ ପାଖାପାଖି ବସୁଥିଲେ । ଗଣିତରେ ବାସ୍ୟା ଶ୍ରେଣୀରେ ସବୁଠୁ ଭଲ ଥିଲା । ସେ ଗଣିତ କଷିବାବେଳେ ବାପାଙ୍କୁ ସାହାଯ୍ୟ କରୁଥିଲା ଓ ବାପା ତା'କୁ କବିତା ପ୍ରବନ୍ଧ ଲେଖିବାବେଳେ ସାହାଯ୍ୟ କରୁଥିଲେ । ସେମାନେ ପରସ୍ପରକୁ ବହୁତ ଭଲ ପାଉଥିଲେ । ଲଢିଲେ ମଧ୍ୟ ନିଜ ନିଜ ଭିତରେ ।

ଦିନେ ସେମାନଙ୍କ ଶିକ୍ଷୟିତ୍ରୀ ପରଦିନ ପ୍ରବନ୍ଧ ଲେଖି ଆଣିବା ପାଇଁ ପିଲାଙ୍କୁ କହିଲେ । ପ୍ରବନ୍ଧର ବିଷୟ ଥିଲା : ''ମୁଁ ଖରାଛୁଟି କିପରି କଟାଇଲି ?''

''କ'ଣ ଲେଖିବି, ମୁଁ ଭାବି ବି ପାରୁନି,'' ବାସ୍ୟା ବାପାଙ୍କୁ କହିଲା ।

''ତୁ ଖରାଛୁଟି କେଉଁଠି କଟାଇଲୁ ?'' ବାପା ପଚାରିଲେ ।

''ମୁଁ ଛୁଟିରେ ଗାଁରେ ଥିଲି ।'' ବାସ୍ୟା କହିଲା ।

''ଠିକ୍ ଅଛି । ତୁ ତାହାହେଲେ ଗାଁ ବିଷୟରେ ହିଁ ଲେଖିଦେବୁ ।'' ବାପା କହିଲେ ।

''କ'ଣ ଲେଖିବି ?''

''ତୁ ସେଠାରେ କ'ଣ ସବୁ କରିଥିଲୁ ?''

''ବିଶେଷ କିଛି ନୁହଁ ..... ମୁଁ ନଦୀରେ ପହଁରୁଥିଲି ଓ ମାଛ ଧରୁଥିଲି । ପୁଣି ଜଙ୍ଗଲରେ ବୁଲୁଥିଲି .....''

''ଏ ବିଷୟରେ ହିଁ ତୋତେ ଲେଖିବାକୁ ହେବ ।'' ବାପା କହିଲେ ।

ଅଳ୍ପ ସମୟରେ ବାସ୍ୟାର ପ୍ରବନ୍ଧ ଶେଷ ହୋଇଗଲା । ସେ ଏପରି ଲେଖିଥିଲା :

### *ମୁଁ ଖରାଛୁଟି କିପରି କଟାଇଲି ?*

*ମୁଁ ଖରାଛୁଟିଟି ଆଈଙ୍କ ସହ ଗାଁରେ ବିତାଇଲି । ସେଠାରେ ସାଙ୍ଗମାନଙ୍କ ସହ ନଦୀରେ ପହଁରିଲି, ମାଛ ଧରିଲି ଓ ଜଙ୍ଗଲରେ ବୁଲିଥିଲି । ଗରମ ଦିନରେ ଗାଁରେ ରହିବାକୁ ଖୁବ୍ ଭଲ ଲାଗେ ।*

*ବା. ସେରେଦିନ୍*

''ଏହା କୌଣସି ପ୍ରବନ୍ଧ ନୁହଁ,'' ବାପା କହିଲେ । ''ତୋ ଆଈଙ୍କ ବିଷୟରେ ଲେଖ । ସେ କେମିତି ମହିଳା, କ'ଣ କହିଲେ, କେଉଁ ଗୀତ ଗାଇଲେ - ଏସବୁ କଥା ।''

''ସେ ଗୀତ ଗାଉ ନଥିଲେ, ଗପ କହୁଥିଲେ,'' ବାସ୍ୟା କହିଲା ।

''ଠିକ୍ ଅଛି, ସେ ଗପ ବିଷୟରେ ଲେଖି ଦେ', ସାଙ୍ଗଙ୍କ ବିଷୟରେ, ନଦୀ ଓ ଜଙ୍ଗଲ ବିଷୟରେ ବି ଲେଖି ଦେ' ।''

''ଏସବୁ ଲେଖିବା, ମୋ ଦ୍ୱାରା ହେବନି,'' ବାସ୍ୟା କହିଲା । ''ଯଦି ଏସବୁ କଥା ମୁଁ ତୋତେ କହିବି ଓ ତୁ ଲେଖିଦେବୁ, ତାହା ହେଲେ କେମିତି ହେବ ?'' ତା'ପରେ ବାସ୍ୟା ବାପାଙ୍କୁ ସବୁ କଥା କହିଲା ଓ ବାପା ଗୋଟିଏ ଲମ୍ବା ପ୍ରବନ୍ଧ ଲେଖିଦେଲେ । ସେ ବହୁତ ଚେଷ୍ଟା କରି ପ୍ରବନ୍ଧଟି ଲେଖିଥିଲେ । ପ୍ରବନ୍ଧଟି ବହୁତ ଭଲ ହୋଇଥିଲା । ବାସ୍ୟା ଖୁସି ହୋଇଗଲା । ''ମୁଁ ଏହା ନକଲ କରିଦେବି,'' ସେ କହିଲା । ''ଏଥର ତୁ ତୋ ନିଜ ପାଇଁ ପ୍ରବନ୍ଧ ଲେଖି ନେ' । ଆଉ ବେଶୀ ସମୟ ନାହିଁ ।''

ବାସ୍ୟା ପ୍ରବନ୍ଧଟି ନେଇ ଚାଲିଗଲା । ବାପା ନିଜ ପ୍ରବନ୍ଧ ଲେଖିବାକୁ ବସିଲେ । କିନ୍ତୁ ଅଡୁଆରେ ପଡିଲେ । ଗୋଟିଏ ବିଷୟକୁ ଥରେ ଥରେ କରି ଦୁଇ ଥର ଅଲଗା ଲେଖିବା କିଛି ସହଜ କଥା ନୁହଁ । ବାପା ବି ଖରାଛୁଟି ଗାଁରେ କଟାଇଥିଲେ, ନଈରେ ପହଁରିଥିଲେ, ମାଛ ଧରିଥିଲେ । କିନ୍ତୁ ଏ ସବୁ କଥା ସେ ବାସ୍ୟାର ପ୍ରବନ୍ଧରେ ଲେଖି ସାରିଥିଲେ । ବର୍ତ୍ତମାନ ତାଙ୍କ ଚିନ୍ତା ଥିଲା, ଏପରି କିଛି ଲେଖିବେ, ଯାହା ବାସ୍ୟାର ପ୍ରବନ୍ଧରେ ନଥିବ । ନଚେତ୍ ଶିକ୍ଷୟିତ୍ରୀ ଜାଣିଦେବେ ଯେ, ନିଶ୍ଚୟ ଏହା ପଛରେ କିଛି କାରସାଦି ଅଛି । ସେ ଭାବୁ ନଥିଲେ, ତାଙ୍କ ପ୍ରବନ୍ଧଟି ଭଲ ହେଉଛି କି ଖରାପ । ସେ ଗୋଟିଏ ପ୍ରବନ୍ଧ ଲେଖିଲେ, ଯେଉଁଥିରେ ବାସ୍ୟାର ପ୍ରବନ୍ଧ ସହ ଆଦୌ ମେଳ ନଥିଲା । ଶିକ୍ଷୟିତ୍ରୀଙ୍କ କହିବା ଅନୁସାରେ, ତାହା କୌଣସି ବିଷୟ ସହ ବି ମିଶୁ ନଥିଲା ।

ଶିକ୍ଷୟିତ୍ରୀ ସେମାନଙ୍କ ପ୍ରବନ୍ଧଗୁଡିକୁ ଫେରାଇବାବେଳେ କହିଲେ, ''ଏସବୁ ତୁମମାନଙ୍କ ପ୍ରବନ୍ଧ । ବାସ୍ୟାର ପ୍ରବନ୍ଧ ସବୁଠୁ ଭଲ ହୋଇଛି । ମୁଁ ତାହା ପଢି ଶୁଣାଉଛି । ତା'ପରେ ସେ ବାପାଙ୍କର ପ୍ରଥମ ପ୍ରବନ୍ଧ ପଢି ଶୁଣାଇଲେ - ଯାହା, ବାପା ବାସ୍ୟା ପାଇଁ ଲେଖିଥିଲେ ।

''ବହୁତ ଭଲ ହୋଇଛି, ବାସ୍ୟା ।'' ଶିକ୍ଷୟିତ୍ରୀ କହିଲେ, ''ତୁମେ ଭଲ ପ୍ରବନ୍ଧ ଲେଖିଛ । ଏହା ଖୁବ୍ ସୁନ୍ଦର ଭାବେ ଲେଖିଛ ଓ ଏଥିରେ କିଛି ଭୁଲ୍ ନାହିଁ । ତୁମର ଜେଜେମା' ଓ ସାଙ୍ଗମାନେ ଖୁବ୍ ଭଲ ।'' ପୁଣି କୌଣସି କାରଣରୁ ସେ ବାପାଙ୍କ ଆଡକୁ ଦେଖିଲେ । ବାସ୍ୟାର ମୁହଁ ଶୁଖିଗଲା । ସେ ଏ ପ୍ରକାର କାମ ପାଇଁ ସାବାସୀ ଚାହୁଁ ନଥିଲା, ଯାହା ଆଉ କେହି କରିଦେଇଛି । ପୁଣି ଶିକ୍ଷୟିତ୍ରୀ କହିଲେ,''ଏବେ ମୁଁ ସବୁଠୁ ଖରାପ ପ୍ରବନ୍ଧଟି ପଢି ଶୁଣାଇବି ।'' ତା'ପରେ ସେ ବାପାଙ୍କର ଦ୍ୱିତୀୟ ପ୍ରବନ୍ଧଟି ପଢିଲେ । ବାପାଙ୍କ ମୁହଁ ଲାଲ୍ ପଡିଗଲା । ସେ ଏମତି କିଛି କାମ ପାଇଁ ଗାଳି ଶୁଣିବାକୁ ଚାହୁଁ ନଥିଲେ, ଯେଉଁଥିରେ ତାଙ୍କର କିଛି ଭୁଲ୍ ନଥିଲା । ତାଙ୍କୁ ଭୀଷଣ ଲାଜ ଲାଗିଲା । ବାପାଙ୍କ ଦ୍ୱିତୀୟ ପ୍ରବନ୍ଧ ପଢିବା ପରେ ଶିକ୍ଷୟିତ୍ରୀ କହିଲେ : ''ମୁଁ ଆଶା କରୁଛି, ଆରଥରକୁ ତୁମେ ଏହାଠାରୁ ଭଲ ଲେଖିବ ଓ ବାସ୍ୟା ଏହାଠାରୁ ଖରାପ ଲେଖିବନି । କ'ଣ, କଥାଟା ବୁଝିଲ ?''

''ହଁ.....'' ବାପା ଧୀରେ କହିଲେ ।

''ତୁମେ ବି ଠିକ୍ ବୁଝିଲ ନା, ବାସ୍ୟା ?'' ଶିକ୍ଷୟିତ୍ରୀ ପଚାରିଲେ ।

''ହଁ.....'' ବାସ୍ୟା ବି ଧୀରେ କହିଲା ।

ସେ ଦୁହେଁ ଲାଲ୍ ଲାଲ୍ ଗାଲ କରି ପାଖାପାଖି ବସିଥିଲେ । ଅନ୍ୟ ପିଲାମାନେ କିଛି ବୁଝି ପାରି ନଥିଲେ । ବାପା ଓ ବାସ୍ୟା ବି କାହାକୁ କିଛି କହି ନଥିଲେ । କିନ୍ତୁ ତା' ପରଠୁ ବାପା ନିଜେ ନିଜେ ଗଣିତ କରିବାରେ ମନ ଦେଲେ ଓ ବାସ୍ୟା ମଧ୍ୟ ଚେଷ୍ଟା କଲା । ଆରମ୍ଭରେ ବାପାଙ୍କର କିଛି ଭୁଲ ହେଉଥିଲା । ବାସ୍ୟାର ପ୍ରବନ୍ଧ ବି ଭଲ ହେଉ ନଥିଲା । ଆସ୍ତେ ଆସ୍ତେ ସେମାନଙ୍କର ସେହି ବିଷୟଗୁଡିକରେ ଭଲ ହେଲା । ସେମାନେ ଅନୁଭବ କଲେ ଯଦି କୌଣସି ଜିନିଷ ଶିଖିବାର ଅଛି, ତେବେ ନିଜେ ଚେଷ୍ଟା କରିବା ଦରକାର । ନଚେତ୍ ସଫଳତା ମିଳିବନି । ତଥାପି ସେ ଦୁହେଁ ବହୁତ ବର୍ଷ ପର୍ଯ୍ୟନ୍ତ ଶ୍ରେଣୀରେ ପାଖାପାଖି ବସୁଥିଲେ ।



## ବାପା 'ମାୟାକୋଭସ୍କି'ଙ୍କ ସହ କଥା ହେଲେ

ବାପା ଯେବେ ପିଲା ଥିଲେ, ଥରେ ସେ କବି ମାୟାକୋଭସ୍କିଙ୍କ ସହ କଥା ହୋଇଥିଲେ, ଅବା ଏମିତି କୁହାଯାଇପାରେ ଯେ, ମାୟାକୋବସ୍କି ବାପାଙ୍କ ସହ କଥା ହୋଇଥିଲେ । ଘଟଣାଟି ଏପରି ହୋଇଥିଲା ।

ବାପା କବିତାଟିଏ ଲେଖିଥିଲେ । ଏହାର ଶୀର୍ଷକ ଥିଲା 'ଖନିକ୍' । ସେ କବିତାଟିକୁ ଶିକ୍ଷୟିତ୍ରୀଙ୍କୁ ଦେଖାଇଲେ । ସେ କବିତାଟି ପଢିଲେ ଓ କହିଲେ :

''ଆମ ସ୍କୁଲରେ ଆଉ କେହି କବିତା ଲେଖନ୍ତିନି । ତେଣୁ ତୁମ କବିତାଟି ସ୍କୁଲ ପତ୍ରିକାରେ ଛପାଯିବ । ତୁମେ ନିଜେ ଏହା ଲେଖିଛ, ଏହା ବହୁତ ଭଲ । କିନ୍ତୁ ମନେରଖ, ଦୟାକରି ଏହା ଭାବି ଖୁସି ହୁଅନି ଯେ ତୁମେ କବି ପୁସ୍କିନ୍ ହୋଇଗଲ ।''

ବାପା ମନେ ମନେ ଠିକ୍ କଲେ, ସେ ପୁସ୍କିନ୍ ବୋଲି ନିଜକୁ ଭାବିବେନି ।

କବିତାଟି ସ୍କୁଲ ପତ୍ରିକାରେ ଛପାଗଲା । ସବୁ ପିଲା ପତ୍ରିକା ପଢୁଥିଲେ । ତେଣୁ ସମସ୍ତେ ଜାଣିଗଲେ, ତୃତୀୟ ଶ୍ରେଣୀର ପିଲାଟିଏ ନିଜେ କବିତା ଲେଖୁଛି । ସବୁ ଶିକ୍ଷକ ଓ ଶିକ୍ଷୟିତ୍ରୀ ତାଙ୍କର ପ୍ରଶଂସା କଲେ । ପୁଅମାନେ ତାଙ୍କୁ ଚିଡାଇଲେ :

*"କବି ତ ବଡଲାଟ୍ ,*

*ମୁଣ୍ଡରେ ତୋର ଛାଟ୍ !"*

ଉପର ଶ୍ରେଣୀରେ ପଢୁଥିବା ଝିଅମାନେ ସେମାନଙ୍କ ଆଲ୍‌ବମ୍‌ରେ କିଛି ଲେଖିବା ପାଇଁ ବାପାଙ୍କୁ ଅନୁରୋଧ କରୁଥିଲେ । ସ୍କୁଲ ପତ୍ରିକାର ସମ୍ପାଦକ ବାପାଙ୍କୁ କହିଲା :

"ତୁମେ ଆମ ପତ୍ରିକାର ସବୁ ସଂଖ୍ୟାରେ ଗୋଟିଏ ଲେଖାଏଁ କବିତା ଲେଖିଲେ ଭଲ ହେବ । ନଚେତ୍ ପରେ ପସ୍ତାଇବ ।" ସେ ବାପାଙ୍କ ନାକତଳକୁ ଧୀରେ ଚିପି ଗେଲ କରିଦେଲା ।

ବାପା ବଡ ହେବାପରେ ବୁଝିଲେ, ଏପରି ସମ୍ପାଦକ ହେବା ପାଇଁ ପ୍ରତି କବି ସ୍ୱପ୍ନ ଦେଖନ୍ତି । କିନ୍ତୁ ସେତେବେଳେ ସେ ଡରି ଯାଇଥିଲେ । ସମ୍ପାଦକ ଥିଲା ସପ୍ତମ ଶ୍ରେଣୀର ଜଣେ ମୋଟାସୋଟା ପିଲା । ସେ ଏତେ ଜୋରରେ ବିଧା ମାରୁଥିଲା ଯେ, ସମସ୍ତେ ତାଙ୍କୁ ବହୁତ ଡରୁଥିଲେ । ଏହା ପରଠୁ ସ୍କୁଲ ପତ୍ରିକାର ପ୍ରତି ସଂଖ୍ୟାରେ ପିଲା-ବାପାଙ୍କର ଗୋଟିଏ ଲେଖାଏଁ କବିତା ବାହାରିଲା । କେବେ କେବେ ତ ଦୁଇ ଦୁଇଟା କବିତା ବି ଛପାହେଲା ।

ବାପା ସେ ସମୟରେ ଯାହା କିଛି ଦେଖୁଥିଲେ, ତା' ବିଷୟରେ କବିତା ଲେଖୁଥିଲେ - ବସନ୍ତ ଋତୁ, ଶୀତ କାଳ, ଗ୍ରୀଷ୍ମ ଓ ଶରତ... ଏପରି ସବୁ ବିଷୟରେ । ଏହାଛଡା ଆହୁରି ଅନେକ ବିଷୟରେ ସେ କବିତା ଲେଖିଥିଲେ । ଏପରି କି ବିଜ୍ଞାନ ଶ୍ରେଣୀର ଘଣ୍ଟି ବାଜିବା ମାତ୍ରେ ପିଲାମାନେ ଡରିଯାଇ ଚାଲି ଯାଉଥିବା ବିଷୟରେ ବି ସେ କବିତା ଲେଖିଥିଲେ । କବିତାର ଶୀର୍ଷକ 'ବିଜ୍ଞାନ ଶିକ୍ଷକଙ୍କ ନାଁ'କୁ ନେଇ ରଖାଯାଇଥିଲା । ଦୁଇ ବର୍ଷ ମଧ୍ୟରେ ବାପା ବହୁତ

କବିତା ଲେଖିଥିଲେ । କିନ୍ତୁ ଲେଖାଗୁଡିକ 'ଭଲ' ନା 'ଖରାପ' ସେ ଜାଣି ପାରୁ ନଥିଲେ । ସ୍କୁଲରେ ସମସ୍ତେ ତାଙ୍କର ପ୍ରଶଂସା କରୁଥିଲେ । ମାତ୍ର ବାପା ମନେ କରୁଥିଲେ, ଏହା ଅସଲି କବିତା ନୁହେଁ । ଭଲ କବିତା ଲେଖି ପାରିବେ କି ନା ଏହା ଭାବି ସେ ବ୍ୟସ୍ତ ହେଉଥିଲେ । ଏହାର ଉତ୍ତର ତା'ଙ୍କୁ କିଏ ଦେବ ? ନିଶ୍ଚୟ କେହି ଅସଲ କବି । ସବୁଠୁ ଭଲ ଓ ପ୍ରସିଦ୍ଧ କବି । ଗୋଟିଏ ଶବ୍ଦରେ କହିଲେ ସେ ଥିଲେ ମାୟାକୋଭସ୍କି ।

ବାପା ନିଜର ଭଲ କବିତାଗୁଡିକୁ ବାଛିଲେ ଓ ମାୟାକୋଭସ୍କିଙ୍କୁ ଦେଖାଇବା ପାଇଁ ଠିକ୍ କଲେ । କିନ୍ତୁ ମାୟାକୋଭସ୍କିଙ୍କ ପାଖକୁ ଯିବାକୁ ସେ ଡରୁଥିଲେ । କାରଣ ସେ ବହୁତ ଛୋଟ ଥିଲେ । ତେଣୁ ସେ ତାଙ୍କ ସହ ଟେଲିଫୋନ୍‌ରେ କଥା ହେବା ପାଇଁ ସ୍ଥିର କଲେ । ଟେଲିଫୋନ୍ ନମ୍ବର ସୂଚକ ବହି (ଡାଇରେକ୍ଟରିରୁ) ସେ ମାୟାକୋଭସ୍କିଙ୍କ ଫୋନ୍ ନମ୍ବର ଟିପିଲେ । ଅନେକ ଥର ସନ୍ଧ୍ୟାରେ, ଘରେ କେହି ନ ଥିବା ବେଳେ, ସବୁ କବିତାଗୁଡିକୁ ଟେବୁଲ୍ ଉପରେ ରଖି, ସାହସ ବାନ୍ଧି, ସେ ଟେଲିଫୋନ୍ ରିସିଭର୍ ଉଠାଉଥିଲେ, ଅପରେଟରଙ୍କୁ ନମ୍ବର ଦେଉଥିଲେ ..... ଓ ରିସିଭର୍ ରଖି ଦେଉଥିଲେ । ସେ ଏତେ ଭୟ କରୁଥିଲେ ଯେ ମାୟାକୋଭସ୍କିଙ୍କ ସହ କଥାହେବାକୁ ସାହସ କରୁ ନଥିଲେ । ପୂରା ସପ୍ତାହେ କାଳ ଏପରି ହିଁ ଚାଲିଲା । ଏଥିପାଇଁ ତାଙ୍କୁ ଲାଜ ମାଡିଲା ।

ଶେଷରେ ରବିବାର ସନ୍ଧ୍ୟାରେ, ଯେତେବେଳେ ଜେଜେ ଓ ଜେଜେମା' ନାଟକ ଦେଖିବାକୁ ଯାଇଥିଲେ, ବାପା ପୁଣି ଟେଲିଫୋନ୍ କଲେ । ଏଥର ସେ ଅପରେଟରଙ୍କୁ ନମ୍ବର୍ ଦେଇ ରିସିଭର୍ ରଖିଲେନି । ଆରପାଖରୁ ଏକ ଗମ୍ଭୀର ଓ ଉଚ୍ଚ କଣ୍ଠରେ ଶବ୍ଦ ଶୁଭିଲା, ଯାହା ସେ ସାରା ଜୀବନ ମନେ ରଖିବାର ଥିଲା । ଏହି ସନ୍ଧ୍ୟାରେ ସେହି ସ୍ୱରରେ ରାଗ ଭରି ରହିଥିଲା । ସେ କଠୋର କଣ୍ଠରେ ପଚାରିଲେ :

''କିଏ କହୁଛ ?''

ବାପାଙ୍କ ଦମ୍ଭ ଭାଙ୍ଗିଗଲା । ସେ ଖୁବ୍ ଡରିଗଲେ । କିଛି କହିଲେନି । ଆଉ ପାଖରୁ ଗର୍ଜନ ଶୁଭିଲା :

''କିଏ ଏ ଦୁଷ୍ଟାମୀ କରୁଛି ? କେଉଁ ମୂର୍ଖ ପ୍ରତି ସନ୍ଧ୍ୟାରେ ଫୋନ କରୁଛି ? ସେ କେବଳ ଫୋନ୍ କରୁଛି, କିନ୍ତୁ କିଛି କହୁନି । ଆଚ୍ଛା, କିଛି ତ କୁହ । ଅନ୍ତତଃ ଗୀତଟିଏ ବି ଗାଇଦିଅ, ଧନମଣି ।''

ବାପା ଏତେ ଡରି ଯାଇଥିଲେ ଯେ ସେ କିଛି କହି ପାରିଲେନି । ଶେଷରେ ତାଙ୍କ ହାତରୁ ଏହି ସୁଯୋଗଟି ଚାଲିଗଲା । ସେତେବେଳେ ସେ ଅନ୍ତତଃ କ୍ଷମା ମାଗିନେବାର ଥିଲା । 'ହାଲୋ' କହି କିଛି କହିବାର ଥିଲା । କିନ୍ତୁ ସେ କିଛି ବି କହିପାରିଲେନି । ଚୁପ୍‌ଚାପ୍ ଠିଆ ହୋଇରହିଲେ ।

''ଆଚ୍ଛା, ନମସ୍କାର । ତୁମେ ଅପେକ୍ଷା କର, ମୁଁ ତୁମକୁ ନିଶ୍ଚୟ ଧରିନେବି । ଆଉଥରେ ଫୋନ୍ କରି ଦେଖ, ତା'ପରେ ମୋ କଥା ବୁଝିଯିବ ।''

ମାୟାକୋଭସ୍କି ଖୁବ୍ ଜୋର୍‌ରେ ରିସିଭରଟାକୁ ରଖିଦେଲେ । ବାପା ଆଉ କେବେ ତାଙ୍କ ପାଖକୁ ଫୋନ୍ କଲେନି । କିମ୍ବା ସେ କେବେ କିଛି କହିବା ବି ଶୁଣି ନାହାନ୍ତି । ଏହି ଘଟଣା ବିଷୟରେ ଆଉ କାହାକୁ ସେ କହି ନଥିଲେ । ଅନେକ ବର୍ଷ ପର୍ଯ୍ୟନ୍ତ କେବଳ ଦୁଇ ଜଣଙ୍କୁ ଏ ବିଷୟରେ ଜଣାଥିଲା - ବାପା ଓ ମାୟାକୋଭସ୍କି । ଅବଶ୍ୟ ପ୍ରକୃତରେ ଏହା କେବଳ ବାପାଙ୍କୁ ହିଁ ଜଣା ଥିଲା। କିନ୍ତୁ ମାୟାକୋଭସ୍କିଙ୍କ ସହ ଫୋନ୍‌ରେ ଏହି କଥା ହେବା ବିଷୟ ସେ କେବେ ଭୁଲି ପାରି ନଥିଲେ । ଆଉ, ଏବେ ତୁମେ ବି ତ ଏ ବିଷୟରେ ଜାଣିଗଲେ ।



## ବାପା ନିଜ କବିତା ଶୁଣାଇଲେ

ପିଲାବେଳେ ଥରେ ବାପାଙ୍କ ସ୍କୁଲକୁ ଏକ ପାଖ ସ୍କୁଲର ବାର୍ଷିକ ଉତ୍ସବକୁ ନିମନ୍ତ୍ରଣ କରାଯାଇଥିଲା । ପାଖ ସ୍କୁଲର ପିଲାମାନେ ଏହା ଆଗରୁ ବାପାଙ୍କ ସ୍କୁଲ ଉତ୍ସବକୁ ଆସିଥିଲେ । ସେମାନେ ନାଚ ଓ ଗୀତ କାର୍ଯ୍ୟକ୍ରମ ପ୍ରଦର୍ଶନ କରିଥିଲେ । କବିତା ଶୁଣାଇଥିଲେ ଓ ଜିମ୍‌ନାଷ୍ଟିକ୍ ଦେଖାଇଥିଲେ । ସେମାନେ ଏକ ଭଲ ନାଟକ ବି ଦେଖାଇଥିଲେ ।

ଅବଶ୍ୟ ଜଣେ ପିଲାଟି ଝରକାରୁ ଡେଇଁବାବେଳେ ତଳେ ନପଡି ମଞ୍ଚରେ ସଜାଯାଇଥିବା ପ୍ରଚ୍ଛଦପଟର ଛବି-କଳାଟି ଉପରେ ପଡିଯିବାରୁ ପୂରା ସେଟ୍‌ଟି ଭାଙ୍ଗି ଖରାପ ହୋଇଯାଇଥିଲା । ସେମାନଙ୍କର ଅଭିନୟ ଓ ଅନ୍ୟ କାର୍ଯ୍ୟକ୍ରମ ବହୁତ ଭଲ ଥିଲା । ଏବେ ବାପାଙ୍କ ସ୍କୁଲ ପିଲା ପାଖ ସ୍କୁଲଟିରେ ନିଜ କାର୍ଯ୍ୟକ୍ରମ ଦେଖାଇବାର ଥିଲା । ସେମାନେ ପାଖ ସ୍କୁଲର ସମସ୍ତଙ୍କୁ ଚକିତ କରିଦେବା ପାଇଁ ଚାହୁଁଥିଲେ । କିନ୍ତୁ କେମିତି ? ଏହି କଥା ଉପରେ ସେମାନଙ୍କ ଆଲୋଚନା ଚାଲିଥିଲା ।

''ଆମେ ଗୀତ ଗାଇ ପାରିବା, ହେଲେ ସେମାନେ ବି ଗାଇ ପାରନ୍ତି । ଆମେ ନାଚ ଦେଖାଇ ପାରିବା, ସେମାନେ ବି ତାହା ଜାଣନ୍ତି । ଆମ ଜିମ୍‌ନାଷ୍ଟିକ୍ ଓ ତାଙ୍କ ଜିମ୍‌ନାଷ୍ଟିକ୍ ଭିତରେ ବେଶୀ ଫରକ୍ ନାହିଁ । ଆମର ପିରାମିଡ୍ ଭାଙ୍ଗି ଗଲେ କ'ଣ ହେଲା, ତାଙ୍କର ତ ପୂରା ସେଟ୍ ଭାଙ୍ଗି ଯାଇଥିଲା ! ଆମେ କବିତା ପାଠ କରି ପାରିବା, ହେଲେ ସେମାନେ ବି ଏହା କରି ପାରିବେ । ଆମ ପାଖରେ ଏମିତି କ'ଣ ଅଛି, ଯାହା ସେମାନଙ୍କ ପାଖରେ ନାହିଁ ?''

ସମସ୍ତେ ଗଭୀର ଚିନ୍ତାରେ ପଡିଥିଲେ । ''ଆରେ ! ଆମର ତ ଚନ୍ଦନ ଅଛି ।'' କେହି ଜଣେ ପାଟି କରି ଉଠିଲା ।

''ସେ ଭୁକିପାରେ !'',

''ସେ କୁକୁଡା ପରି ବୋବାଇ ପାରେ !''

''ସେ ବିଲେଇ ପରି ବି ବୋବାଇ ପାରେ !''

''ସେ ନିଜ ହାତ ଉପରେ ଭରାଦେଇ ଚାଲି ପାରେ !''

''ଓଃ ! ସମସ୍ତେ ଏକା ଥରେ ପାଟି କରନି !'' ଶିକ୍ଷୟିତ୍ରୀ କହିଲେ । ହୋ ହଲ୍ଲା ଏଥର ଥମିଗଲା । ଚନ୍ଦନ କହିଲା :

''ତେବେ କ'ଣ ହେଲା ? ଯେ କେହି ବି ଏହା କରିପାରିବ...

ମୋତେ ଯଦି କବିତା ଲେଖିବା ଆସୁଥାଆନ୍ତା, ତାହା ହେଲେସିନା କିଛି କାମ ହୋଇଥାନ୍ତା ...''

ସେ ବାପାଙ୍କ ଆଡକୁ ଦେଖିଲା । ଅନ୍ୟ ସମସ୍ତେ ବାପାଙ୍କ ଆଡକୁ ଦେଖିଲେ । ଶିକ୍ଷୟିତ୍ରୀ କହିଲେ :

''ତୁମେ ସତରେ ଠିକ୍ କହିଲ ! ଆମର ଏଠାରେ ଆମ ନିଜ କବି ଅଛନ୍ତି ।''

''ଆଉ ସେମାନଙ୍କର କବି ନାହାନ୍ତି !'' ପିଲା ପାଟି କଲେ ।

''ମୁଁ କେବେ ମଞ୍ଚ ଉପରେ ଠିଆ ହୋଇନି କିମ୍ବା ଅନ୍ୟ ସ୍କୁଲରେ କବିତା ପଢ଼ିନି '' ବାପା କହିଲେ ।

''ଏଥିପାଇଁ ତୁମେ ଚିନ୍ତା କରନି !''

''ଇଏ କି' କଥା !''

ଶିକ୍ଷୟିତ୍ରୀ କହିଲେ :

''ସବୁ କିଛି ଠିକ୍ ହୋଇଯିବ । ତେବେ ତୁମେ ମନେରଖ ଯେ, ତୁମେ କବି ପୁସ୍କିନ୍ ନୁହଁ ।'' ସେ ଏଇ କଥାଟି ଆଗରୁ ବି ଅନେକ ଥର କହିଥିଲେ ଓ ବାପା ବି ତାହା ମନେ ରଖିଥିଲେ ।

ଶେଷରେ ସେଇ ଭୟଙ୍କର ଦିନଟି ଆସିଗଲା । ଭୟରେ ଥରୁଥିବା ବାପା ତାଙ୍କ ସ୍କୁଲର ଜିମ୍‌ନାଷ୍ଟିକ୍, ନର୍ତ୍ତକ ଓ ଗାୟକଙ୍କ ସାଙ୍ଗରେ ପାଖ ସ୍କୁଲକୁ ଚାଲିଲେ । ସେ ଗୋଟିଏ ଅପରିଚିତ ମଞ୍ଚର ଭିତର ପାଖରେ ଠିଆ ହୋଇ ଏକ ଅପରିଚିତ ଦୁନିଆକୁ ଦେଖୁଥିଲେ ।

ଜାଗାଟି ଅପରିଚିତ ପୁଅ ଓ ଝିଅରେ ଭରି ଯାଇଥିଲା । ପ୍ରଥମ ଧାଡିରେ ଜଣେ ଅଜଣା ପ୍ରଧାନ ଶିକ୍ଷକ ଓ ଅନେକ ଅପରିଚିତ ଶିକ୍ଷକ ଓ ଶିକ୍ଷୟିତ୍ରୀ ବସିଥିଲେ । ସେ ସମସ୍ତେ ଅପରିଚିତ ପରି ମଞ୍ଚକୁ ଚାହିଁ ରହି ହସୁଥିଲେ ।

ଛୋଟ ବାପା ବେଳକୁବେଳ ଅଧିକ ଘାବରେଇବାରେ ଲାଗିଲେ । ତୁମେ ଅନୁମାନ କରି ପାରୁଥିବ, ସେଇ ସଭାଘରଟିରେ ସ୍କୁଲ ପିଲା ଓ ବଡମାନେ ମଞ୍ଚ ଆଡକୁ ଠିକ୍ ସେପରି ଚାହିଁ ହସୁଥିଲେ ଓ ତାଳି ମାରୁଥିଲେ, ଯେପରି ବାପାଙ୍କ ସ୍କୁଲରେ ସମସ୍ତେ କରୁଥିଲେ । କିନ୍ତୁ ଏହି ଅପରିଚିତ ସ୍କୁଲରେ ବାପା ଏତେ ଘାବରେଇ ଯାଇଥିଲେ ଯେ ତାଙ୍କୁ ସବୁ କିଛି ନୂଆ ଲାଗୁଥିଲା ।

ଚନ୍ଦନ ବାପାଙ୍କ କାନ ପାଖରେ ଫୁସ୍‌ଫୁସ୍ କରି କହିଲା : ''ଏ ସ୍କୁଲରେ ସେମିତି ଖାସ୍ କିଛି ନାହିଁ । ଠିକ୍ ଆମ ସ୍କୁଲ ପରି ଲୋକ, ବରଂ ତା'ଠାରୁ ଖରାପ.....''

ଝିଅମାନେ ତାଙ୍କୁ ଚକୋଲେଟ୍ ଦେଲେ । ଶିକ୍ଷୟିତ୍ରୀ ତାଙ୍କୁ କହିଲେ : ''କବିତାଗୁଡିକ ତୁମର ମନେ ଅଛି ତ ? 'ହଁ' ନା 'ନା' ?''

''ହଁ.....'' ବାପା ଥର ଥର ଓଠରେ କହିଲେ । ଶେଷରେ ସେ ହିଁ ଭୟଙ୍କର ବେଳ ଆସିଗଲା । ''ବର୍ତ୍ତମାନ ଆମ ସ୍କୁଲର ଜଣେ କବି ତାଙ୍କ ନିଜ କବିତା ଆପଣମାନଙ୍କୁ ଶୁଣାଇବେ ।'' ଘୋଷଣା କରୁଥିବା ଲୋକଜଣକ ଏହା କହିବା ସେ ଶୁଣିଲେ ।

ସମସ୍ତେ ତାଳି ବଜାଇଲେ । ଚନ୍ଦନ ବାପାଙ୍କୁ ମଞ୍ଚ ଉପରକୁ ଠେଲି ଦେଲା । ବାପା ଭୟରେ ଥରି ଥରି ପାଦ ଘୋଷାଡି ଘୋଷାଡି ମଞ୍ଚ ଉପରକୁ ଆସିଗଲେ । ସେ କେବେ ଏତେ ଡରି ନ ଥିଲେ । ତାଙ୍କ ଆଖି ଆଗରେ ପୂରା ହଲ୍‌ଟି ଘିରି ଘିରି ହୋଇ ବୁଲୁଥିଲା । ତାଙ୍କ ମୁହଁଟି ପାଉଁଶ ପରି ଶେତା ପଡି ଯାଇଥିଲା । ତାଙ୍କ କାନ ମୁଣ୍ଡ ଭୟରେ ଭାଁ, ଭାଁ କରୁଥିଲା

ହଲ୍‌ରେ ବାପାଙ୍କୁ ଗୋଟିଏ ବି ମୁହଁ ଠିକ୍ ଦେଖାଯାଉ ନଥିଲା । କାରଣ ତାଙ୍କ ଆଗରେ ସମସ୍ତେ ତାଙ୍କ କବିତା ଶୁଣିବା ପାଇଁ ଅପେକ୍ଷା କରିଥିଲେ । କିନ୍ତୁ ବାପା କେବଳ ଚୁପ୍‌ଚାପ୍ ଠିଆ ହୋଇ ରହିଲେ । ପରେ

ଚନ୍ଦନ କହିଲା, ପହିଲେ ବାପା ଚାଦର ପରି ଧଳା ଦିଶୁଥିଲେ, ପୁଣି ହଠାତ୍ ନୀଳ ପଡି ଯାଇଥିଲେ, ତା'ପରେ ଶାଗୁଆ ହୋଇ ଯାଇଥିଲେ ଓ ତାଙ୍କ ଦେହରେ ଜାଗା ଜାଗାରେ ଲାଲ୍ ଲାଲ୍ ଚିହ୍ନ ମାଡି ଯାଇଥିଲା ।

" ଦେଖିବା !" ମିଶା କହିଲା । ସେ ଏପରି ଲାଗୁଥିଲା, ସତେ ଯେପରି ଫୁଟନ୍ତା ବାଣଟିଏ ! "ଜିଦ୍ ମାର, ଯଦି ସେମାନଙ୍କ ସ୍କୁଲରେ ଏମିତି କେହି ଅଛି !"

ଶ୍ରୋତାଙ୍କ ଭିତରୁ କେହି କେହି ହସୁଥା'ନ୍ତି । ଶେଷରେ ବାପା ନିଜ ସ୍କୁଲ ପାଇଁ ଲେଖିଥିବା କବିତାଟି ପଢିବାକୁ ଆରମ୍ଭ କଲେ । ପହିଲେ ସଭିଏଁ ଶାନ୍ତ ଭାବେ କବିତା ଶୁଣିଲେ, ମାତ୍ର ସେ ଯେତେବେଳେ କବିତାର ଘୋଷା ଦୋହରାଇଲେ, ସେତେବେଳେ ଖୁବ୍ ପାଟି ହେଲା । ଘୋଷାଟି ଏପରି ଥିଲା :

*ଏତେ ମଧୁର, ଏତେ ସୁନ୍ଦର, ସ୍କୁଲ କେଉଁଠି ଅଛି ?*
*ଗୋଟିଏ ମାତ୍ର ଇସ୍କୁଲ ସିଏ ଯେଉଁଠି ମୁଁ ପଢୁଅଛି ।*

ଯେହେତୁ ଉତ୍ସବଟି ଛଅ ନମ୍ବର ସ୍କୁଲରେ ଚାଲିଥିଲା, ତେଣୁ ସେଠାର ପିଲେ, ଏ କଥା ମାନିବାକୁ ପ୍ରସ୍ତୁତ ନଥିଲେ । ସେମାନଙ୍କ ସ୍କୁଲର ସମ୍ମାନରେ ଆଞ୍ଚ ଆସିଲା ଭାବି ସେମାନେ ଖୁବ୍ ପାଟି କଲେ । ନିଜ ନିଜର ପାଦକୁ ତଳେ ପିଟି ଶବ୍ଦ କଲେ । ବାପା ଏତେ ଡରି ଯାଇଥିଲେ ଯେ, ସେମାନେ କାହିଁକି ଏପରି ହେଉଛନ୍ତି, ତାହା ସେ ଭାବି ପାରୁ ନଥିଲେ । ସେ ହାତ ଉଠାଇଲେ ଓ କହିଲେ :

"ଦୟାକରି କବିତା ପାଠ ମଝିରେ ମୋତେ ବାଧା ଦିଅନ୍ତୁ ନାହିଁ । ମୋର ପଦ ଶେଷରେ ଆପଣମାନେ ଯେତେ ଇଚ୍ଛା, ସେତେ ପାଟି କରିପାରିବେ ।"

ସମସ୍ତେ ଚୁପ୍ ହୋଇଗଲେ । ଛୋଟ ବାପା ଜାଣି ପାରି ନଥିଲେ, ଏହା କହି ସେ ନିଜ ପାଇଁ ବିପତ୍ତି ଡାକି ଆଣିଛନ୍ତି । ଛଅ ନମ୍ବର ସ୍କୁଲର ପିଲା

ଭାରି ହୁସିଆର ଥିଲେ । କବିତା ପାଠ ଗୋଟିଏ ମଜାଦାର ଖେଳ ଭଳି ଚାଲିଲା । ବାପା ପଦ ଶେଷ କଲା ପର୍ଯ୍ୟନ୍ତ ସମସ୍ତେ ଚୁପ୍ ହୋଇ ବସୁଥିଲେ । କିନ୍ତୁ ସେ ଘୋଷା ଆରମ୍ଭ କରିବା ମାତ୍ରେ ହୋ-ହଲ୍ଲା ଆରମ୍ଭ ହୋଇ ଯାଉଥିଲା ।

ପିଲାମାନେ ବିଚିତ୍ର ପ୍ରକାର ଶବ୍ଦ କରୁଥିଲେ । କିଏ ଭୁକୁଥିଲା ତ କିଏ ପାଟିରେ ହୁଇସିଲ୍ ମାରୁଥିଲା । କିଏ ପୁଣି ପାଦ ପିଟି ଶବ୍ଦ କରୁଥିଲା । କିଛି ସମୟ ପରେ ସମସ୍ତେ ଚୁପ ହୋଇ ଯାଉଥିଲେ ଓ ବାପା ଆଉ ଗୋଟିଏ ପଦ ଶେଷ କରୁଥିଲେ । ତା'ପରେ ପୁଣି ହୋ-ହଲ୍ଲା ଚାଲୁଥିଲା । କବିତାଟିରେ ଗୁଡାଏ ପଦ ଥିଲା । ଗୋଟିଏ ପରେ ଗୋଟିଏ କରି ବାପା ପୁରା କବିତାଟି ପଢିଲେ । କବିତା ଶେଷ ହେଲାବେଳକୁ ମଞ୍ଚ ଆଗରେ ଥିବା ଅପରିଚିତ ପିଲା, ଶିକ୍ଷକ, ଶିକ୍ଷୟିତ୍ରୀଙ୍କ ସହ ମଞ୍ଚ ପଛରେ ଓ କଡରେ ଥିବା ତାଙ୍କ ସ୍କୁଲ ପିଲା, ଶିକ୍ଷୟିତ୍ରୀ ବି ହସି ହସି ଗଡି ଯାଉଥିଲେ । ଚନ୍ଦନ ତ ପୁରା ଚଟାଣ ଉପରେ ହସି ହସି ବସି ପଡିଥିଲା । ବାପା ଏହି କବିତା ପାଠକୁ କେବେ ଭୁଲି ପାରି ନଥିଲେ । ଏହା ମଧ୍ୟରେ ବହୁ ବର୍ଷ ବିତି ଗଲାଣି । କିନ୍ତୁ ଆଜି ବି କେହି ଅପରିଚିତ ବ୍ୟକ୍ତି ଯଦି ବାପାଙ୍କୁ ଦେଖି କହେ ଓ ମୁହାଁମୁହିଁ ହୋଇଗଲେ ବିଲେଇ ପରି ମିଆଁଉ କହେ, ତେବେ ବାପା ଜାଣିଦିଅନ୍ତି ଯେ, ଏହି ଅପରିଚିତ ପିଲାଟି ସେତେବେଳେ ଛଅ ନମ୍ବର ସ୍କୁଲରେ ପଢୁଥିଲା । ବାପାଙ୍କ କବିତା ସେ ଆଜି ବି ମନେ ରଖିଛି । ଆଉ ବାପା ଏହା କେବେ ଭୁଲି ନ ଥିଲେ ଯେ ସେ କବି ପୁଷ୍କିନ୍ ନୁହନ୍ତି .....



# ବାପା ଟେବୁଲ୍ ଟେନିସ୍ ଖେଳିଲେ

ବାପା ଯେବେ ପିଲା ଥିଲେ, ସେତେବେଳେ ନୂଆ ଖେଳଟିଏ ବାହାରିଥିଲା । ଖେଳର ନାଁ ଥିଲା ଟେବୁଲ୍ ଟେନିସ୍ । ଆଜିକାଲି ବି ବହୁତ ପିଲା ଏ ଖେଳ ଖେଳୁଛନ୍ତି । କିନ୍ତୁ ସେତେବେଳେ ସବୁ ସ୍କୁଲରେ, ସବୁ ଶ୍ରେଣୀର, ସବୁ ପିଲା ଟେବୁଲ୍ ଟେନିସ୍ ଖେଳୁଥିଲେ । ସେମାନେ ଟେବୁଲ୍ ଉପରେ, ବେଞ୍ଚ ଉପରେ, ପିଆନୋ ଉପରେ, ଚଟାଣ ଉପରେ - ସବୁ ଜାଗାରେ ଖେଳୁଥିଲେ । ସେମାନେ ସକାଳୁ ସଞ୍ଜ ଯାଏଁ ଖେଳୁଥିଲେ । କେହି କେହି ରାତିରେ ବି ଏହା ଖେଳୁଥିଲେ । ଟେବୁଲ୍ ଟେନିସ୍ ଛଡା ଆଉ କିଛି ଖେଳ

ଅଛି, ଏହା କେତେଲୋକ ଭୁଲି ଯାଇଥିଲେ ! ବାପାଙ୍କ ସ୍କୁଲରେ ଅନେକ ଥର ଟେବୁଲ୍ ଟେନିସ୍ ମ୍ୟାଚ୍ ହେଉଥିଲା । ପ୍ରତି ଶ୍ରେଣୀ ଭିତରେ ଏହି ମ୍ୟାଚ୍ ଖେଳା ଯାଉଥିଲା । ପୁଣି ସବୁ ଶ୍ରେଣୀର ବିଜେତାଙ୍କ ମଧ୍ୟରେ ଖେଳ ହେଉଥିଲା, ସ୍କୁଲ ଚାଂପିଅନ୍ ବାଛିବା ପାଇଁ । ତା'ପରେ ସ୍କୁଲଗୁଡିକ ମଧ୍ୟରେ ପ୍ରତିଯୋଗିତା ହେଉଥିଲା ଓ ସେଥିରେ ଯେ ଜିତୁଥିଲା, ତା'କୁ ଜିଲ୍ଲାର ଶ୍ରେଷ୍ଠ ବା ଚାଂପିଅନ୍ କୁହାଯାଉଥିଲା । ଏହାଛଡା ସହର-ସହର ମଧ୍ୟରେ ମଧ୍ୟ ଖେଳ ହେଉଥିଲା । ତା'ପରେ ବଡ ବଡ ସହରରେ ଏହି ମ୍ୟାଚ୍ ହେଉଥିଲା ! ଗୋଟିଏ ଛୋଟ ଧଳା ବଲ୍‌କୁ ଛୋଟ ଛୋଟ ପଟା (ରାକେଟ୍)ରେ ଏଣେ ତେଣେ ମାରିବାରେ କ'ଣ ମଜା ଅଛି, ବାପା ତାହା ବୁଝିପାରୁ ନଥିଲେ ।

''ଏହା ପଟା ନୁହଁ, ବ୍ୟାଟ୍ ।'' ପିଲାମାନେ କହୁଥିଲେ ।

''ହେଲେ କ'ଣ ହେଲା ? ତଥାପି ମୁଁ ଏହା ବୁଝିପାରୁନି ।''

''ତୁମେ ଚେଷ୍ଟା କାହିଁକି କରୁନ ?''

''ମୁଁ ଚାହୁଁନି ।''

ଏ ପ୍ରକାର କଥାବାର୍ତ୍ତା ଅନେକ ଥର ହୋଇଥିଲା । ଭାଗ୍ୟକୁ ଏମିତି ଖୁସିର ଦିନଟିଏ ଆସିଲା, ଯେଉଁ ଦିନ ଟେବୁଲ୍ ଟେନିସ୍ ବ୍ୟାଟ୍‌ଟିଏ ଧରି ବାପା ଟେବୁଲ୍‌ର ଗୋଟିଏ ପାଖରେ ଠିଆ ହେଲେ । ଏହା ତାଙ୍କ ପାଇଁ ଏକ ଭୟଙ୍କର ଦିନ ଥିଲା । ମୁଁ ଏହାକୁ 'ଏକ ଖୁସିଭରା ଦିନ' କହିଛି; କିନ୍ତୁ ବାପାଙ୍କ ବାପା, ମା' ଏହି ଦିନଟିକୁ ସେମାନଙ୍କ ଜୀବନର ସବୁଠୁଁ ଖରାପ ଦିନ ମାନିଥିଲେ । ଏହାର କାରଣ, ସେ ଦିନଠୁଁ ବାପାଙ୍କୁ ଟେବୁଲ୍ ଟେନିସ୍ ଖେଳିବାର ନିଶା ଧରିଲା । ପହିଲେ ପହିଲେ ସେ ନିଜ ବ୍ୟାଟ୍‌ରେ ବଲ୍‌କୁ ମାରି ବି ପାରୁ ନଥିଲେ । ପରେ ସେ ବଲ୍ ମାରିବା ଶିଖିଗଲେ । କିନ୍ତୁ ବଲ୍‌ଟି ଟେବୁଲ୍‌ରୁ ଉପରକୁ ଉଠୁ ନଥିଲା । କିନ୍ତୁ ଯେତେବେଳେ ବଲ୍‌କୁ ଉଠାଇ ମାରିବାରେ ବାପା ସଫଳ ହେଲେ, ବଲ୍ ଟେବୁଲ୍ ଉପରେ ପଡି ଉପରକୁ ଉଠିଯିବାରେ ଲାଗିଲା, ସତରେ ସେ ଖେଳର ମଜା ସେ ପାଇଗଲେ । ସେ ବୁଝିଗଲେ, ବଲ୍

ମାରିବାରେ ବିଭିନ୍ନ କୌଶଳ ଅଛି - ମାରିବାର କୌଶଳ ଦ୍ୱାରା ବଲ୍ ଘୂରିଘୂରି ଯାଇପାରେ, ଦିଗ ବଦଳାଇ ବି ପାରେ । ବଲ୍‌ଟିକୁ ଏପରି ମାରିଲେ ତାହା ଟେବୁଲ୍ ଉପରୁ ଉଛୁଳି ଉଠି ଗୋଟିଏ କୋଣକୁ ଚାଲି ଯାଉଥିଲା । ବିରୋଧୀ ଖେଳାଳୀ ବଲ୍‌କୁ ଟେବୁଲ୍‌ର ସେହି ଜାଗାକୁ ମାରୁଥିଲା, ଯେଉଁଠି ଖେଳାଳୀ ପାଇଁ ବଲ୍ ଅଟକାଇବା କଷ୍ଟକର ହେଉଥିଲା । ବାପା ଏବେ ବି ଭାବନ୍ତି, ଟେବୁଲ୍ ଟେନିସ୍ ଗୋଟିଏ ସୁନ୍ଦର ଖେଳ । କିନ୍ତୁ ସେ ସମୟରେ ବାପା ଭାବୁଥିଲେ, ଏହା ପୃଥିବୀର ଏକ ଅଦ୍ଭୁତ ଖେଳ । ସେ ପଢିବା ଛାଡିଦେଲେ । ଘର କାମ କରିବା ବି ବନ୍ଦ କରିଦେଲେ । ସ୍କୁଲରେ ନିଜ ମନପସନ୍ଦର ଖେଳ ଖେଳିବା ପାଇଁ ହିଁ ସେ ସେଠାକୁ ଯାଉଥିଲେ । ଖେଳରେ ଦିନକୁ ଦିନ ତାଙ୍କର ବେଶ୍ ଉନ୍ନତି ହେଲା; କିନ୍ତୁ ପାଠରେ ଦିନକୁ ଦିନ ତାଙ୍କର ନମ୍ବର କମିବାରେ ଲାଗିଲା ।

ଶିକ୍ଷୟିତ୍ରୀ ତାଙ୍କୁ ଅନେକଥର ଅଲଗା ଡାକି ନେଇ ବୁଝାଇଲେ । ସେ ବୁଝାଇ କହିଲେ, ପ୍ରତିଟି କାମର ଗୋଟିଏ ସୀମା ଅଛି । ସେ ଏହା ମଧ୍ୟ କହିଲେ, ''ଖେଳ ବେଳେ ଖେଳ ଓ କାମବେଳେ କାମ କର ।''

ବାପା କୌଣସି ଯୁକ୍ତି କରୁନଥିଲେ । ଏ କଥାରେ ବି ଯୁକ୍ତି କରି ଲାଭ କ'ଣ ? ଟେବୁଲ୍ ଟେନିସ୍ ହିଁ ଜୀବନର ଏକମାତ୍ର କାମ ଓ ଅନ୍ୟ ସବୁ କିଛି ଖେଳ; ଏହା ସେ କିପରି ଅବା ଶିକ୍ଷୟିତ୍ରୀଙ୍କୁ ବୁଝାନ୍ତେ ? ସେ ଅନ୍ୟ ସବୁ ସାଙ୍ଗଙ୍କ ଅପେକ୍ଷା ଅଧିକ ଖେଳୁଥିଲେ । କେତେଜଣ ସାଙ୍ଗଙ୍କୁ ସେ ହରାଇ ବି ପାରୁଥିଲେ । ଯେଉଁ ଦିନ ସେ ସ୍କୁଲର ତିନି ନମ୍ବର ଖେଳାଳୀକୁ ହରାଇଲେ, ତାଙ୍କୁ ଶିକ୍ଷୟିତ୍ରୀ କହିଲେ :

''ମୁଁ ତୁମ ବାପା ଓ ମାଆଙ୍କ ସହ କଥା ହେବି । ଏ ପ୍ରକାର ଅବସ୍ଥା ବେଶୀ ଦିନ ଚାଲି ପାରିବନି ।''

ସେ ଜେଜେ ଓ ଜେଜେମା'ଙ୍କୁ ଚିଠି ଲେଖିଲେ । କିନ୍ତୁ ସେମାନଙ୍କୁ ସେ ଚିଠି କେବେ ମିଳିଲାନି । ବାପା ଚିଠି ବାକ୍ସରୁ ତାହା ବାହାର କରିନେଲେ,

ପଢିଲେ ଓ ଚିରିଦେଲେ । ତାହା ଏତେ ଖରାପ ଥିଲା ଯେ ବାପା ଚିଠିଟିକୁ ଛୋଟ ଛୋଟ ଟୁକୁରା କରିଦେଲେ ।

ତା'ପରେ ଶିକ୍ଷୟିତ୍ରୀ ଜେଜେ ଓ ଜେଜେମା'ଙ୍କ ପାଖକୁ ଆଉ ଗୋଟିଏ ଚିଠି ଲେଖିଲେ । ଏହା ପୂର୍ବ ଚିଠି ଅପେକ୍ଷା ଅଧିକ ଖରାପ ଥିଲା । ଏଥିପାଇଁ ପୂର୍ବ ଚିଠି ଅପେକ୍ଷା ଅଧିକ ଟୁକୁରା କରି ତାହା ଫିଙ୍ଗି ଦେଲେ ।

ଏ କଥା କହିବା ଅପମାନର ବିଷୟ, କିନ୍ତୁ ଏହା ନିରାଟ ସତ କଥା ।

ଜେଜେ ଓ ଜେଜେମା' ସ୍କୁଲକୁ ତାଙ୍କୁ ଦେଖା କରିବା ପାଇଁ ନ ଆସିବାରୁ ଶିକ୍ଷୟିତ୍ରୀ ଆଶ୍ଚର୍ଯ୍ୟ ହେଲେ । ଯେଉଁଦିନ ସେ ତୃତୀୟ ଚିଠି ଲେଖିବାକୁ ଯାଉଥିଲେ, ସେଦିନ ବାପା ସ୍କୁଲର ଚାଂପିଅନ୍‌କୁ ହରାଇଦେଲେ । ଏହାପରେ ସେ ଠିକ୍ କଲେ, ଏଣିକି ତାଙ୍କ ପାଇଁ ସ୍କୁଲରେ କିଛି ନାହିଁ । ତେଣୁ ସେ ସ୍କୁଲ ଯିବା ଛାଡିଦେଲେ । ସକାଳୁ ସେ ସ୍କୁଲକୁ ଯିବା ପରି ବ୍ୟାଗ୍ ଧରି ବାହାରୁଥିଲେ; କିନ୍ତୁ ବ୍ୟାଗ୍ ଭିତରେ ବହି, ଖାତା ବଦଳରେ ରହୁଥିଲା - ଦୁଇଟି ବ୍ୟାଟ୍, ତିନିଟି ବଲ୍ ଓ ଗୋଟିଏ ଜାଲ (ନେଟ୍) । ତା'ଛଡା ସେ କିଛି ଜଳଖିଆ ବି ନେଉଥିଲେ । ଏହା ତାଙ୍କର ଦ୍ୱିପହରର ଖାଦ୍ୟ ହେଉଥିଲା । ସାରାଦିନ ସେ ଟେବୁଲ୍ ଟେନିସ୍ ଖେଳୁଥିଲେ । ତାଙ୍କର କିଛି ନୂଆ ସାଥି ବି ଥିଲେ । ସେମାନେ ମଧ୍ୟ ବାପାଙ୍କ ପରି ଟେବୁଲ୍ ଟେନିସ୍ ପ୍ରେମୀ ଥିଲେ । ସହରର ସବୁ ବଡ ବଡ ଖେଳାଳୀଙ୍କ ସହ ତାଙ୍କର ଦେଖା ହେଉଥିଲା । ଏଥର ସେ ଜୁନିଅର୍ ଦଳର ଖେଳାଳ ବନିଗଲେ । କିନ୍ତୁ ତାଙ୍କର ପ୍ରଥମ ଅସଲ ମ୍ୟାଚ୍ ସେ ହାରିଗଲେ । ଏଣେ ଶିକ୍ଷୟିତ୍ରୀ ନିଜ ... ଚିଠିର ଉତ୍ତର ନ ପାଇ, ପୁଣି ବାପାଙ୍କୁ ସ୍କୁଲରେ ଅନୁପସ୍ଥିତ ରହିବାର ଦେଖି ସେ ନିଜେ ବାପାଙ୍କ ଘରକୁ ଆସିଲେ । ବାପା ଘରେ ନଥିଲେ । କିନ୍ତୁ ଜେଜେ ଓ ଜେଜେମା' ଘରେ ଥିଲେ । କେତେ ଦିନରୁ ପୁଅ ସ୍କୁଲ ଯାଉନି ଓ ସାରାଦିନ ଗୋଟିଏ ଛୋଟ ଧଳା ବଲ୍ ପିଟିବାରେ ସମୟ କଟାଉଛି, ଏହାଶୁଣି ସେମାନେ ଚକିତ ହୋଇଗଲେ । ସେମାନେ ଭାବିଲେ, ବାପାଙ୍କ ମୁଣ୍ଡ ଖରାପ ହୋଇଯାଇଛି । ସେମାନେ କେବେ ବି

ଟେବୁଲ୍ ଟେନିସ୍ ଖେଳି ନଥିଲେ । ସେମାନେ ବାପାଙ୍କ ବ୍ୟାଟ୍ ବଲ୍ ଲୁଚାଇ ଦେଲେ ଓ ତାଙ୍କୁ ଜଣେ ଡାକ୍ତରଙ୍କ ପାଖକୁ ନେଇଗଲେ । ସେ ପୁଣି କୌଣସି ସାଧାରଣ ଡାକ୍ତର ନୁହଁନ୍ତି -ସେ ଥିଲେ ଜଣେ ପ୍ରଫେସର, ଯେ ତାଙ୍କର ସାରା ଜୀବନ କେବଳ ପାଗଳଙ୍କ ଚିକିତ୍ସା କରି ଆସୁଥିଲେ । କିନ୍ତୁ ପ୍ରଫେସର ମହାଶୟ ମଧ୍ୟ କେବେ ଟେବୁଲ୍ ଟେନିସ୍ ଖେଳି ନଥିଲେ । ସେ ଏହି ଖେଳ ପାଇଁ ସ୍କୁଲ ନଯିବାର କାରଣ ଜାଣିପାରୁ ନଥିଲେ । ବାପା ବି ଏହା ବୁଝିପାରୁ ନଥିଲେ, ପ୍ରଫେସର୍ ମହାଶୟ କାହିଁକି ଏ ପ୍ରକାର ଅଜବ ପ୍ରଶ୍ନ ପଚାରୁଛନ୍ତି :

"କ'ଣ, ସ୍କୁଲରେ ପିଲାମାନେ ତୁମକୁ ପିଟନ୍ତି ?"

"ତୁମେ ଠିକ୍ ଶୋଇ ପାରୁଛ ?"

"ସକାଳୁ ତୁମ ମୁଣ୍ଡ ବଥାଏ କି ?"

"ସଞ୍ଜବେଳେ ତୁମ ମୁଣ୍ଡ ବଥା ହୁଏ କି ?"

"ତୁମକୁ ଅନ୍ଧାରରେ ଭୟ ଲାଗେ କି ?"

"କେବେ ମୂର୍ଚ୍ଛା ହୋଇଛ ?"

ବାପା ଏ ସବୁର ଉତ୍ତରରେ କେବଳ 'ନା' କହିଲେ । ପ୍ରଫେସର ମହାଶୟ ପ୍ରଶ୍ନ ପଚାରି ଚାଲିଲେ :

"କ'ଣ ତୁମକୁ ତୁମ ସ୍କୁଲ ଭଲ ଲାଗେ ?"

"ତୁମ ଦିଦିଙ୍କୁ ତୁମେ ଭଲ ପାଅ ?"

"ସ୍କୁଲରେ ତୁମର ସାଙ୍ଗ ଅଛନ୍ତି ?"

"ତୁମର ସାଙ୍ଗ କେଉଁମାନେ - ପୁଅ ?"

"ଝିଅ ?"

ବାପା ଏସବୁ ପ୍ରଶ୍ନର ଉତ୍ତର 'ହଁ' କହିଦେଲେ । ପୁଣି ପ୍ରଫେସର ପଚାରିଲେ : "ଏମିତି କେହି ଝିଅ ଅଛନ୍ତି କି, ଯେ ସମସ୍ତଙ୍କ ଅପେକ୍ଷା ତୁମକୁ ଅଧିକ ଭଲ ଲାଗନ୍ତି ?"

ପିଲା-ବାପା ବିରକ୍ତ ହୋଇଗଲେ । ସେ କହିଲେ :

"ଆପଣ ଏ ସବୁ କାହିଁକି ପଚାରୁଛନ୍ତି, ଡାକ୍ତର ବାବୁ ? ମୁଁ ଟେବୁଲ୍ ଟେନିସ୍ ଖେଳିବା କାରଣରୁ ସ୍କୁଲକୁ ଯାଏନି । ଆପଣଙ୍କର ଏ ସବୁ ପ୍ରଶ୍ନର ତା' ସହ କୌଣସି ସମ୍ପର୍କ ନାହିଁ ।"

"ଠିକ୍ ଅଛି ।" ପ୍ରଫେସର ମହାଶୟ କହିଲେ "ତୁମେ ଏବେ କ'ଣ କରିବାକୁ ଚାହୁଁଛ ?"

"ଟେବୁଲ୍-ଟେନିସ୍ ଖେଳିବି," ବାପା ମୁହୂର୍ତ୍ତକରେ କହିଦେଲେ ।

"ତୁମେ ଜାଣ, ଏସବୁର ଫଳ କ'ଣ ହେବ ? ତୁମେ ଏ ବିଷୟରେ କେବେ ଭାବିଛ କି ?"

"ନିଶ୍ଚୟ," ବାପା କହିଲେ । "ଆମ ଦଳ ରାଜଧାନୀର ମ୍ୟାଚ୍‌ରେ ଜିତି ଯାଇପାରିବ ।"

ଏହା ଶୁଣି ପ୍ରଫେସର ମହାଶୟ ନିଜ କାନ୍ଧ ହଲାଇ ଉଠିଲେ । ସେ ଗିଲାସେ ପାଣିରେ କେଇଟୋପା ଔଷଧ ପକାଇଲେ ଓ ବାପାଙ୍କୁ କହିଲେ :

"ନିଅ, ଏହା ପିଇଦିଅ ।"

"ମୋର ଦରକାର ନାହିଁ," ବାପା କହିଲେ ମୁଁ ଅସୁସ୍ଥ ନୁହେଁ ।"

"କିନ୍ତୁ ମୁଁ ଅସୁସ୍ଥ," ଏହା କହି ପ୍ରଫେସର ମହାଶୟ ସେହି ଔଷଧ ନିଜେ ପିଇଦେଲେ । ତା'ପରେ ପୁଣି ଧୀରେ କହିଲେ :

"ଯଦି ମୁଁ ତୁମ ବାପା, ମାଆଙ୍କୁ ଏଥିପାଇଁ ରାଜି କରାଇବି ଯେ ତୁମକୁ ଏହି ବର୍ଷାସାରା ଖେଳିବାକୁ ଦିଆଯାଉ, ତାହାହେଲେ କ'ଣ ତୁମେ ପ୍ରତିଜ୍ଞା କରିବ ଯେ ଶରତରେ ତୁମେ ସ୍କୁଲକୁ ନିୟମିତ ଯିବ ?"

"ହଁ," ବାପା କହିଲେ ।

ପ୍ରଫେସର ଜେଜେ ଓ ଜେଜେମା'ଙ୍କୁ ଡାକିଲେ ଓ କହିଲେ :

"ପିଲାଟି ସଂପୂର୍ଣ୍ଣ ଠିକ୍ ଅଛି । ତା'କୁ ଖେଳିବାକୁ ଦିଅନ୍ତୁ । ଏବର୍ଷର

ଅଧିକ ସମୟ ତ ସେ ସ୍କୁଲକୁ ଯାଇନି । ଆଉ କିଛି ଦିନ ସେ ଭଲରେ ଖେଳି ଦେଉ ।''

ଏହା କହିବା ପରେ, ସେ ପୁଣି କିଛି ଔଷଧ ପିଇଲେ । ବାପାଙ୍କ ବାପା, ମାଆ ତାଙ୍କୁ ଘରକୁ ନେଇଆସିଲେ ।

ବାପାଙ୍କ ଦଳ ରାଜଧାନୀରେ ମ୍ୟାଚ ଜିତି ପାରିଲାନି । ଦୁଇ ନମ୍ବରରେ ରହିଲା । ବାପା ଏବେ ବି କହନ୍ତି ଯେ ସେହି ବର୍ଷଟି ତାଙ୍କ ପାଇଁ ଖରାପ ନଥିଲା । ସେତେବେଳେ ସେ ଅନୁଭବ କଲେ, କେବଳ ଟେବୁଲ ଟେନିସ୍ ପୃଥିବୀର ଶ୍ରେଷ୍ଠ ଜିନିଷ ନୁହେଁ । ସ୍କୁଲ କଥା ବି ତାଙ୍କର ମନେ ପଡିଲା । ଶରତ ଋତୁରେ ସେ ଆନନ୍ଦରେ ସ୍କୁଲ ଆସିଲେ ଓ ଶେଷରେ ପାସ୍ ବି ହେଲେ । ବହୁତ ବର୍ଷ ବିତିଗଲାଣି । ତାଙ୍କର ପୁରୁଣା ବ୍ୟାଟ୍ ଆଜି ବି ଆଲମାରୀ ଉପରେ ଅଛି । ଜେଜେ ଓ ଜେଜେମା' ତାହା ଦେଖିବା ମାତ୍ରେ ଚିହିଁକି ଉଠନ୍ତି । କିନ୍ତୁ ବାପା ତା'କୁ ଆଦରରେ ଚାହୁଁଥାନ୍ତି । ଟେବୁଲ୍ ଟେନିସ୍ ପାଇଁ ସ୍କୁଲ ଛାଡିବା ପିଲାଳିଆମୀ ଥିଲା । ଏହା ଶୁଣିଲେ ସମସ୍ତେ ହସନ୍ତି । ବାପା ବି ହସନ୍ତି । ଏସବୁ ସତ୍ତ୍ୱେ ଟେବୁଲ୍ ଟେନିସ୍ ଗୋଟିଏ ମଜାଦାର୍ ଖେଳ । ଏହା ବିଷୟରେ ମୁଁ ଦିନେ ଲେଖିବି । ନିଶ୍ଚୟ ଲେଖିବି ।

ବାପା ଯେତେବେଳେ ଦେଖିଲେ ତାଙ୍କ ଝିଅ ବି ଟେବୁଲ୍ ଟେନିସ୍ ଖେଳିବା ଆରମ୍ଭ କଲାଣି, ସେ ଖୁବ୍ ଡରିଗଲେ । କିନ୍ତୁ ଟେବୁଲ୍ ଟେନିସ୍ ଖେଳିବା ପାଇଁ ଝିଅ ସ୍କୁଲ ନ ଛାଡିବାରୁ ସେ ଆଶ୍ୱସ୍ତ ହେଲେ । ଟେବୁଲ୍ ଟେନିସ୍‌ରେ ଚାଂପିଅନ୍ ହେବା ଅପେକ୍ଷା ସେ ଅନୁଭବ କଲେ, ଜେଜେ ଓ ଜେଜେମା'ଙ୍କୁ କେମିତି ଲାଗିଥିବ ତାଙ୍କ ପିଲାବେଳର ଘଟଣା ପାଇଁ । ତା'ପରେ ସେ ନିଜର ପୁରୁଣା ବ୍ୟାଟ୍‌କୁ ଆଲମାରୀର ଗୋଟିଏ କୋଣରେ ଲୁଚାଇଦେଲେ । ତେବେ କେବେକେବେ ସେ ବ୍ୟାଟ୍‌ଟିକୁ ବାହାରକରି ଦେଖନ୍ତି ଓ ନିଜର ଟେବୁଲ୍ ଟେନିସ୍ ଖେଳିବାର ଦିନଗୁଡିକୁ ମନେ ପକାନ୍ତି ।



# ବାପା ଷ୍ଟୁଲ ତିଆରି କଲେ

ବାପା ଯେବେ ପିଲାଥିଲେ, ସେ ନିଜ ହାତରେ ଷ୍ଟୁଲଟିଏ ତିଆରି କରିଥିଲେ । ସେମିତି ଷ୍ଟୁଲ ଦୁନିଆରେ ଆଉ କେଉଁଠି ନାହିଁ । ବଢେଇ ଶିକ୍ଷକଙ୍କର ଏହା ହିଁ ବିଶ୍ୱାସ ଥିଲା ।

ସ୍କୁଲରେ କର୍ମଶାଳାଟିଏ ଥିଲା । କର୍ମଶାଳାର ଶିକ୍ଷକ ପିଲାଙ୍କୁ କରତରେ କାଠ ଚିରା, ବାରିସୀରେ କାଠ କାଟିବା, ହାତୁଡିରେ ପିଟିବା, ପାଲୁ ମାରିବା, ଅଠା ଦେଇ ଯୋଡିବା । ନିଜ ହାତ ତିଆରି ଖରାପ ଜିନିଷକୁ ପୁଣି ଖୋଲି ଅଲଗା କରିବା ଓ ତା'କୁ ପୁଣି ଠିକ୍ ରୂପେ ତିଆରି କରିବା ଶିଖାଉଥିଲେ । ସେ ଏହି କାମ ସଂପୂର୍ଣ୍ଣ ଠିକ୍ ନ ହେବା ଯାଏଁ ବାରମ୍ବାର ଶିଖାଉଥିଲେ । ସେ

ଜଣେ ପୁରୁଣା କାଳିଆ ସାଧାସିଧା ଲୋକ ଥିଲେ ଓ ଲୁହା ଫ୍ରେମ୍‌ର ଚଷମା ଲଗାଉଥିଲେ । ତାଙ୍କର ଗୋଟିଏ କଥା ସମସ୍ତଙ୍କୁ ଭଲ ଲାଗୁଥିଲା - "ମାଡକୁ ଭୂତ ଡରେ ଓ ଓସ୍ତାଦ୍‌କୁ କାମ ଡରେ ।" ବେଳେବେଳେ ସେ ଆଉ ପଦେ ମିଶାଇ କହୁଥିଲେ, "ଅଳସୁଆ ହିଁ କାମକୁ ଡରେ ।"

ସେ ଏ ପ୍ରକାରେ ପଢାଇବା ଆରମ୍ଭ କରିଥିଲେ :

"ଏହା କ'ଣ ?"

"ହାତୁଡି ।" ପ୍ରାୟ ସବୁ ପିଲା କହି ଉଠିଲେ ।

"ଠିକ୍ କହିଛ । ଆଉ ଏହା ?"

"ଖିଲ ।"

"ଠିକ । ଆଉ ଏହା କ'ଣ ?"

'କାଠପଟା ....."

ସାବାସ୍ । ବର୍ତ୍ତମାନ ତୁମ ଭିତରୁ କିଏ ଏହି ଖିଲଟିକୁ ଏହି କାଠପଟା ଭିତରକୁ ହାତୁଡିରେ ଗୋଟିଏ ମାଡରେ ପୂରାଇ ପାରିବ ?"

"ମୁଁ ।"

"ମୁଁ କରି ପାରିବି ।"

"ମୋତେ କରିବାକୁ ଦିଅନ୍ତୁ ।"

ଏହି କାମଟି କରିବା ପାଇଁ ପ୍ରସ୍ତୁତ ଥିଲେ ଅନେକ ପିଲା । କିନ୍ତୁ ସବୁଠୁଁ ବଳବାନ ପିଲା ମଧ୍ୟ ଗୋଟିଏ ମାଡରେ ଖିଲଟିକୁ ପଟା ଦିହରେ ମାଡ଼ି ପାରିଲେନି । ତା'ପରେ ଶିକ୍ଷକ ନିଜେ ଖିଲଟିଏ ଆଣି କାଠପଟାର ଉପରେ ରଖିଲେ ଓ ହାତୁଡିରେ ଗୋଟିଏ ମାଡରେ ତାହା ଭିତରକୁ ପଶିଗଲା । ସବୁ ପିଲା ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ ।

"ତୁମର ଆଖି ଓ ହାତ ସୁସ୍ଥ ରହିବା ଦରକାର । " ଦଢ଼େଇ ଶିକ୍ଷକ କହିଲେ, କ'ଣ, ବୁଝି ପାରୁଛ ତ ?

'ହଁ ।' ପିଲା ବାପା କହିଲେ ଓ ଖୁବ୍ ଜୋର୍‌ରେ ନିଜ ଆଙ୍ଗୁଠି ଉପରେ ହିଁ ହାତୁଡି ବାଡେଇ ଦେଲେ । ତାଙ୍କୁ ଦିନରେ ତାରା ଦେଖାଗଲା । ସବୁ ପିଲା ହସି ଉଠିଲେ ।

''ଏଥିରେ ହସିବାର କିଛି ନାହିଁ ।'' ଶିକ୍ଷକ କହିଲେ । ''ତୁମେ କ'ଣ ଭାବୁଛ, ମୁଁ ସବୁବେଳେ ଖିଲ ଉପରେ ହିଁ ହାତୁଡିରେ ପାହାର ଦେଉଥିଲି ? ତାହା ନୁହେଁ । ବେଳେବେଳେ ମୋ ଆଙ୍ଗୁଠି ଉପରେ ବି ଚୋଟ ଲାଗୁଥିଲା ଓ ତା' ସଙ୍ଗେ ସଙ୍ଗେ ମୋ ମୁଣ୍ଡରେ ବି ଚାପୁଡା ବାଜୁଥିଲା । ମୋର ଗୁରୁ ମୋତେ ଏପରି ବୁଝାଉଥିଲେ, ଯେ ସେ ଠିକ୍ ଭାବରେ ମାଡ ସେ ଦେଇଛନ୍ତି, ମୁଁ ନୁହେଁ ..... ଆମକୁ ଏପରି ଶିଖା ଯାଉଥିଲା ।''

ସମସ୍ତଙ୍କୁ ଶିକ୍ଷକଙ୍କ ପିଲାବେଳ କଥା ଶୁଣି ଦୁଃଖ ଆସୁଥିଲା, କିନ୍ତୁ ନଜେ ଶିକ୍ଷକ ହସି ଉଠି କହିଥିଲେ ;

''ତୁମେମାନେ ଚିନ୍ତା କରନି - ମୁଁ କାହାରିକୁ ମାରିବିନି । ଏଠାରେ ତୁମେମାନେ ନିଜେ ନିଜର ଗୁରୁ । ଆମେ ସମସ୍ତେ ଗୋଟିଏ ଗୋଟିଏ ଛୋଟ ଷ୍ଟୁଲ୍ ତିଆରିରୁ କାମ ଆରମ୍ଭ କରିବା ।''

ଛୋଟ ଷ୍ଟୁଲ୍ । ଏହାଠୁ ସହଜ କ'ଣ ହୋଇପାରେ । କିନ୍ତୁ ନିଜେ ଚେଷ୍ଟା କରି ଦେଖ । ମାପ ବି ଠିକ୍ ହେବା ଦରକାର । ଉଃ, କେତେ କଟାକଟି କରିବାକୁ ହୁଏ ଓ ପାଲୁ ମାରିବାକୁ ହୁଏ, ଅଠା ଦେଇ ଯୋଡିବାକୁ ହୁଏ । ପୁଣି କେତେଥର ତାହା ଖୋଲି ଆରମ୍ଭରୁ କାମ ଠିକ୍ ରୂପେ କରିବାକୁ ପଡେ । ଛୋଟ ଷ୍ଟୁଲଟିଏ ତିଆରି ପାଇଁ କେତେ କାମ, କେତେ ବଳ, କେତେ ବୁଦ୍ଧି ଓ ଏକାଗ୍ରତା ଦରକାର ହୁଏ ସତରେ ।

ମିଶା ଗୋର୍ବୁନୋଭ୍ ଷ୍ଟୁଲ କାମ ଶେଷ କରିବାରେ ପ୍ରଥମ ଥିଲା ।

''ବସନ୍ତୁ ।'' ସେ ଧୀରେ କହିଲା ।

''ନିଜେ ହିଁ ବସି କରି ଦେଖ, ନା ।'' ଶିକ୍ଷକ ଉତ୍ତର ଦେଲେ ।

ମିଶା ଗର୍ବମିଶ୍ରିତ ଆନନ୍ଦରେ ସାବଧାନତା ସହ ଷ୍ଟୁଲ୍ ଉପରେ ବସିଲା । ଷ୍ଟୁଲଟି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । ମିଶା ଭୂଇଁ ଉପରେ ଗଡି ପଡିଲା । ସମସ୍ତେ ହସିଲେ ।

''ତୁମେ କାମ ଶୀଘ୍ର ସାରିଦେଲ । କିନ୍ତୁ କେତେ ଖରାପ ।'' ଶିକ୍ଷକ କହିଲେ । ''ଏଥର ପୁଣି ଆରମ୍ଭ କର, କିନ୍ତୁ ଏତେ ଜଲ୍‌ଦି କରନା, ନଚେତ୍ ପୁଣିଥରେ ସମସ୍ତଙ୍କୁ ହସାଇବ ।''

ପ୍ରଥମ ଥରରେ କେହି ବି ଭଲ ଷ୍ଟୁଲ୍ କରି ପାରିଲେନି । ସମସ୍ତଙ୍କୁ ପୁଣିଥରେ ଆରମ୍ଭ କରିବାକୁ ହେଲ ।

''କେହି ବ୍ୟସ୍ତ ହୁଅନି, ପିଲାଏ ।'' ଶିକ୍ଷକ ସେମାନଙ୍କୁ ଉତ୍ସାହ ଦେବାକୁ ଯାଇ କହିଲେ । ''ଆମର ଏଇ ସହରଟି ଗୋଟିଏ ଦିନରେ ତିଆରି ହୋଇ ନଥିଲା । ତୁମେ ଭାବୁଥିବ କରତରେ କାଟିବା ଓ ହାତୁଡିରେ ପିଟିବା ଭାରି ସହଜ । ଏହା ସତ କଥା । କିନ୍ତୁ ଏଥିପାଇଁ ବହୁତ ପରିଶ୍ରମ କରିବାକୁ ହେବ, ଝାଳ ବୁହାଇବାକୁ ପଡିବ ।''

ପିଲାମାନେ ମନଧ୍ୟାନ ଦେଇ କାମରେ ଲାଗିଥିଲେ । ଏହା ସବୁ ଦିନର ପାଠ ପଢା ପରି ଥିଲା - ସେମାନେ ସବୁ ପ୍ରଶ୍ନର ଉତ୍ତର ଦେବାରେ ପ୍ରଥମ ହେବାକୁ ଚାହୁଁଥିଲେ । ଏହା ସତରେ ଭାରି ମଜାଦାର ଥିଲା । ପ୍ରଶ୍ନଗୁଡିକର ଉତ୍ତର ଦେଇଦେଲେ କାମ ଶେଷ । କିନ୍ତୁ ଏଠାରେ କଥା ଅଲଗା ଥିଲା । ଷ୍ଟୁଲ୍ ବନେଇବା ପରେ ନିଜକୁ ତା' ଉପରେ ବସିବାକୁ ହେଉଥିଲା । ବାର୍ୟା ଗ୍ଲାଜୁନୋଭା ହିଁ ପ୍ରଥମେ ଠିକ୍ ଷ୍ଟୁଲ୍‌ଟିଏ ତିଆରି କଲା । ହେଲେ ସେ ତ ଝିଅଟିଏ । ହଁ, ଏକଥା ସତ, ତା' ବାପା ବଢେଇ ଥିଲେ । ସେ ତା'କୁ କରତରେ କାଟିବା ଓ ରନ୍ଦା ମାରିବା କାମ ଶିଖାଇ ଦେଇଥିଲେ । ଶିକ୍ଷକ ଗ୍ଲାଜୁନୋଭାକୁ ଖୁବ୍ ପ୍ରଶଂସା କଲେ ।

''ବହୁତ ବଢିଆ । ତୁମେ ତ ସବୁ ପୁଅଙ୍କର ନାକ କାଟିଦେଲ ।''

ପୁଅମାନଙ୍କୁ ଏହା ବହୁତ ଖରାପ ଲାଗିଲା । ସେମାନେ ତା'କୁ ଚିଡାଇବାକୁ ଆରମ୍ଭ କରିଦେଲେ ।

କିନ୍ତୁ ସେ ଆଦୌ ରାଗୁ ନଥିଲା । ସେ କେବଳ କହୁଥିଲା :

"ଆଚ୍ଛା, ତୁମର ଷ୍କୁଲ୍ କାହିଁ ?"

ସବୁ ପୁଅଙ୍କର ମୁହଁ ବନ୍ଦ ହୋଇ ଯାଉଥିଲା । ନିଜ ଷ୍କୁଲ ତିଆରି ଶେଷ କରିବାରେ ଦ୍ୱିତୀୟ ଥିଲା ମିଶା ଗୋର୍ବୁନୋଭ୍ । ପୁଅଙ୍କୁ ଏଥିରେ ବେଶୀ ଖରାପ ଲାଗୁ ନଥିଲା । ଏହାପରେ ଜଣ ଜଣ କରି ସମସ୍ତେ ନିଜନିଜରର ଷ୍କୁଲ୍ କାମ ଶେଷ କରି ଚାଲିଲେ । ଶିକ୍ଷକ ତାହା ଦେଖି କହୁଥିଲେ :

"ହଁ, ଷ୍କୁଲ୍ ପରି ତ ଦିଶୁଛି ।"

ଶେଷରେ ବାପା ବି ଷ୍କୁଲ୍ କାମ ଶେଷ କଲେ । ତାଙ୍କ ହାତ, ମୁହଁ ଆଦି କେତେକ ଜାଗାରେ ଆଞ୍ଚୁଡା ଚିହ୍ନ ଥିଲା; ଦେହ, ହାତରେ ଅଠା ଲାଗିଥିଲା, ତେବେ ଏସବୁ ପାଇଁ ତାଙ୍କର ଚିନ୍ତା ନଥିଲା । ତାଙ୍କର ନିଜ ଷ୍କୁଲ ତ ତିଆରି ସରିଥିଲା ନା । ନିଜ ଜନ୍ମ ଦିନରେ ବି ସେ ଏତେ ଖୁସି ହୋଇ ନଥିଲେ, ଯେତେ ସେ ଖୁସି ହୋଇଥିଲେ ଷ୍କୁଲ ତିଆରି ଶେଷ କରିବା ପରେ । ଶିକ୍ଷକ ବି ତାହା ଅନୁଭବ କରି ନେଇଥିଲେ ।

"ଯାଅ, ତା' ଉପରେ ବସ ।" ସେ ବାପାଙ୍କୁ କହିଲେ ।

"ବାପା ଭାରି ସାବଧାନ ହୋଇ ବସିଲେ । ଷ୍କୁଲ୍ ଟିକିଏ ବି ହଲିଲାନି । ଶିକ୍ଷକ ବାପାଙ୍କୁ ବିସ୍ମିତ ହୋଇ ଦେଖୁଥିଲେ ।

"ଏଥର ନିଜ ଗୋଡକୁ ଟିକେ ଦେଖତ," ସେ ଧୀରେ ବାପାଙ୍କୁ କହିଲେ । ବାପାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ସେ ନିଜ ଗୋଡ ଆଡକୁ ଦେଖିଲେ । ସବୁବେଳ ପରି ସେହି ଦୁଇଟି ହିଁ ଥିଲା । କିନ୍ତୁ ସବୁ ପୁଅ ଓ ଝିଅ ହସିବାରେ ଲାଗିଲେ । ଶିକ୍ଷକ ବି ହସୁଥିଲେ ।

ଆଜି ବି ବାପା ବୁଝିପାରନ୍ତିନି, ସେ ପାଞ୍ଚଟି ଗୋଡ ଥିବା ଷ୍ଟୁଲ୍ କିପରି କରିଥିଲେ । ତାହା ଆଜି ବି ଆମ ପାଖରେ ଅଛି । ଆଉ ଆଜି ବି ସେଥିରେ ପାଞ୍ଚଟି ଗୋଡ ଅଛି ପାଞ୍ଚ, ଚାରିଟି ନୁହଁ । ଆଜି ବି ଶିକ୍ଷକଙ୍କର ସେଇ କଥା ତାଙ୍କୁ ଶୁଭେ, "ପାଞ୍ଚଟି ଗୋଡ କେବେ ବି ତିନିଟି ଗୋଡଠାରୁ ଅଧିକ ଭଲ ହୁଏନି । ପୁଣି ଥରେ ଆରମ୍ଭ କର ।" ଆଉ ବାପା ଭାବନ୍ତି, ଏହା ଏପରି କଥାଟିଏ, ଯାହା ତୁମେ ଜୀବନରେ ସବୁବେଳେ ମନେ ରଖିବା ଉଚିତ୍ ।

## *ଆପଣଙ୍କୁ ପଦେ ଅନୁରୋଧ...*

ପ୍ରିୟ ସାଥି,

ଶିକ୍ଷା ସନ୍ଦେଶ ଧାରାରେ ଆମେ ଏହି ପୁସ୍ତକଟି ପ୍ରକାଶ କରିଛୁ । ଋଷ ଦେଶର ଏହି ମନଛୁଆଁ କାହାଣୀରୁ ଆମର ଅନେକ କିଛି ଶିଖିବାର ଅଛି ବୋଲି ଆମର ବିଶ୍ୱାସ । ଅର୍ଥ, ସମ୍ବଳ ଓ ପ୍ରକାଶନର ବିଭିନ୍ନ ସୀମିତତାକୁ ନେଇ ଆମେ ଏହାକୁ ପ୍ରକାଶ କରୁଛୁ । ଏହାର ବିଷୟବସ୍ତୁ, ଉପସ୍ଥାପନା ଶୈଳୀ, ଅଙ୍ଗସଜ୍ଜା ଓ ବହି ରୂପ ଆପଣଙ୍କୁ କିପରି ଲାଗୁଛି ?

ଏ ବିଷୟରେ ତଳ ଠିକଣାରେ ଚିଠିଟିଏ ଲେଖିବାକୁ ଆପଣଙ୍କୁ ଆମର ଅନୁରୋଧ ।

ଆପଣଙ୍କ ମୂଲ୍ୟବାନ ମତାମତ ଅପେକ୍ଷାରେ,

**ମାନବିକ ପରିବାର,**
**ତୋଟା ସାହି, ମାଷ୍ଟର ପଡା,**
**ଫୁଲବାଣୀ-୭୬୨୦୦୧**
**ଫୋନ୍ : (୦୬୮୪୨)୫୩୨୬୬**

# ମାନବିକ *ପ୍ରୟୋଗଶାଳା*

ଶିକ୍ଷା ଓ ବିଜ୍ଞାନ ... ଆଜିର ମଣିଷ ହାତରେ ଦୁଇଟି ବଳିଷ୍ଠ ଓ ଯାଦୁକାରୀ କାଉଁରି କାଠି । ଏହାର ପରଶରେ ମଣିଷ ପୃଥିବୀକୁ 'ସ୍ୱର୍ଗ' କରି ଦେଇପାରିବ । କିନ୍ତୁ ଏହି ଚାବିକାଠିକୁ ହାତରେ ଧରି ବି ସେ ଆଜି ଚିନ୍ତାରେ ବୁଡି ରହିଥିଲା ପରି ମନେ ହେଉଛି । ଏହାର କାରଣ କ'ଣ ? ଏହାର ସଦୁପଯୋଗର ଉପଯୋଗିତା ସେ ବୃହତ ଅର୍ଥରେ ବୁଝି ପାରିନାହିଁ । ଏ ଦିଗରେ ଆମ ସମାଜରେ ଯେଉଁ ଭାବ ଓ ରଚିର ଅଭାବ ରହିଛି, ତା' ହେଉଛି - *ମାନବିକତା* । ଆମେ ସମସ୍ତେ ଅନୁଭବ କରିଛେ ଯେ, ଜଣେ ମଣିଷର ମାନବିକ ବିଚାରଧାରା ଓ ଆଚରଣ ବି ତା' ଚାରିପାଖରେ ସ୍ୱର୍ଗୀୟ ସୁରଭି ଭରି ଦେଇପାରେ । ଅତଏବ, ଜଣ ଜଣେ କରି ଅଧିକରୁ ଅଧିକ ସାଥି ଏହି ଭାବକୁ ଅପଣାଇଲେ, ସମାଜ ସଫଳ ହେବାକୁ ବାଧ୍ୟ ହେବ । ଏହି ବିଚାର ଓ ବିଶ୍ୱାସକୁ ପୁଞ୍ଜି କରି  ମାନବିକ ପରିବାର ଗୋଟିଏ ତୁଳସୀ ଗଛ ପରି ଶିକ୍ଷା ଓ ବିଜ୍ଞାନର ଅସଲ ମହକକୁ ଖେଳାଇ ଚାଲିଛି ।

ଗଛଟି ଚେର ଧରିଛି ଓଡିଶାର କେନ୍ଦ୍ରସ୍ଥଳ-ଆଦିବାସୀଙ୍କ ଇଲାକା...ଫୁଲବାଣୀର ମାଳଭୂମିରେ । ଏହାର ସ୍ରଷ୍ଟା ହେଉଛନ୍ତି ଅଜଣା, ଅଶୁଣା ଓ ନୀରବ ଭାବରେ ଶିକ୍ଷାର ବିକାଶରେ ଲାଗିଥିବା ଜଣେ ବିପ୍ଳବୀ *ଲୋକଶିକ୍ଷକ* ଓ ଏକ ଆଗ୍ରହୀ ସାଥିଦଳ । ତାଙ୍କ ପାଇଁ ଶିକ୍ଷା, ଶ୍ରେଣୀର ଚାରିକାନ୍ଥ ଭିତରେ ବା ଶୃଙ୍ଖଳା ଡିଗ୍ରୀରେ ଆବଦ୍ଧ ନୁହେଁ । ଏହା ହେଉଛି ମଣିଷ ତିଆରିର ଏକ କାଇଦା--ଜୀବନକୁ ସରସ, ସୁନ୍ଦର ଓ ରଚନାତ୍ମକ କରିବାର ଏକ କଳା । ତା' ବି ପୁଣି ଶ୍ରେଣୀର କିଛି ପିଲାଙ୍କ ପାଇଁ ନହୋଇ ପୂରା ଇଲାକାଟିରେ ଅସଲ ଶିକ୍ଷା ଓ ବିଜ୍ଞାନର ଏକ ଉପଯୋଗୀ ପରିବେଶ ଗଢି ତୋଳିବା ଦିଗରେ ଉଦ୍ଦିଷ୍ଟ । ତାଙ୍କର କାମ ଭିତରେ ରହିଛି : ପ୍ରତ୍ୟେକ

।କ୍ଷାର୍ଥୀଙ୍କୁ ତାଙ୍କ ରଚି ଅନୁସାରେ ଫୁଟି ଉଠିବା ପାଇଁ ଆବଶ୍ୟକୀୟ ଉପାଦାନ ଯାଗାଇଦେବା, ମାଗଣା ହୋମିଓପାଥି ଚିକିତ୍ସା ମାଧ୍ୟମରେ ଏକ ସାମାଜିକ ।ହଯୋଗ ଓ ସମ୍ପର୍କ ବଢାଇବା, ସମାଜକୁ କଳୁଷିତ କରି ପକାଉଥିବା ।କ୍ଷଣଶୀଳତାର କଳଙ୍କ ବିରୁଦ୍ଧରେ ସ୍ୱର ଉଠାଇବା ଓ ଦଳବଳକୁ ବଢାଇବା, ।ଜିର ଶିକ୍ଷାର ମୂଳଶତ୍ରୁ ଟ୍ୟୁସନ୍ ଓ ଦୁର୍ନୀତିକୁ ବିରୋଧ କରିବା ଏବଂ ।ର୍ବୋପରି ବିଜ୍ଞାନର ଅସଲଧାରାକୁ ପ୍ରସାର କରାଇବା ।

ଏହି ଧାରାରେ 'ମାନବିକ' ଏବେ ଶିକ୍ଷା, ସ୍ୱାସ୍ଥ୍ୟ ଓ ବିଜ୍ଞାନ କ୍ଷେତ୍ରରେ ।କ *ଖୋଲା ପ୍ରଯୋଗଶାଳା* । ଏଥିରେ ରଚି ରଖୁଥିବା ଯେ କୌଣସି ସାଥି ।ହାର ବିଭିନ୍ନ କାର୍ଯ୍ୟକ୍ରମରେ ସକ୍ରିୟ ଭାବରେ ଭାଗ ନେଇ ପାରିବେ ।

## *'ମାନବିକ'ର କେତେକ ନିୟମିତ ଗତିବିଧି :*

• ପ୍ରାଚୀନ ପତ୍ରିକା 'ସନ୍ଧାନ'ର ନିୟମିତ ପ୍ରକାଶନ • ଶିକ୍ଷା, ବିଜ୍ଞାନ, ସ୍ୱାସ୍ଥ୍ୟ ଓ ବିକାଶ ସମ୍ବନ୍ଧୀୟ ବିଭିନ୍ନ ପୁସ୍ତକ ପ୍ରକାଶନ ଓ ବିତରଣ • ନିୟମିତ ଚିକିତ୍ସାସେବା • ସାପ୍ତାହିକ ଶିଶୁବିଜ୍ଞାନ ଚକ୍ର • ସ୍କୁଲ ବିଜ୍ଞାନ କାର୍ଯ୍ୟକ୍ରମ • ଦଳଗତ ଗୀତ, ଖେଳ, ଚିତ୍ର, ପରଖ ଓ ପରିପ୍ରକାଶ ଗତିବିଧି, • ଆକାଶ ଦର୍ଶନ (ଖାଲି ଆଖି ଓ ଦୂରବୀକ୍ଷଣ ଦ୍ୱାରା) • ଶିକ୍ଷକ ତାଲିମ କର୍ମଶାଳା • ଶିଶୁ ବିଜ୍ଞାନ ଶିବିର • ବିଜ୍ଞାନ ଖେଳଣା ତିଆରି ଓ ପ୍ରସାରଣ • ବାର୍ଷିକ କାଲେଣ୍ଡର ପ୍ରକାଶନ • ପୁସ୍ତକ ଉତ୍ସବ • ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ।

## 'ମାନବିକ'ର କିଛି ପ୍ରକାଶନ

### *ଶିକ୍ଷା ସନ୍ଦେଶ*

୧. ମୁଁ ଇସ୍କୁଲ ଯିବି.... କୁଆନ୍ ହୁଆ (ଚୀନ୍)
୨. ବାପା ଯେବେ ପିଲା ଥିଲେ.... ଆଲେକ୍‌ଜାଣ୍ଡାର ରସ୍କିନ୍(ଋଷ)
୩. ଦୁଇଶେନ୍.... ଚେଙ୍ଗିଜ୍ ଆଇମ୍ମାତୋଭ(ଋଷ)
୪. ଭଲ ସ୍କୁଲ.... ଜନ୍ ହୋଲ୍ଟ(ଆମେରିକା)
୫. ଶିକ୍ଷକ... ସିଲ୍‌ଭିଆ ଏଷ୍ଟନ୍ ୱାର୍ଣର(ନିଉଜିଲାଣ୍ଡ)
୬. ସବୁ ସମୟରେ ଶିଖିବା.... ଜନ୍ ହୋଲ୍ଟ(ଆମେରିକା)
୭. ପିଲାଙ୍କ ସହ ଆଲୋଚନା.... ଗେରେଥ୍ ବି. ମାଥ୍ୟୁଜ୍(ଆମେରିକା)
୮. ବିପଦ : ସ୍କୁଲ(ସ୍କୁଲ ଓ ଶିକ୍ଷା ସମ୍ପର୍କୀୟ ତର୍କ) (ସୁଇଜରଲାଣ୍ଡ)
୯. ଶିକ୍ଷକ ହବତ ଏମିତି ..... ଗିଜୁଭାଇ (ଭାରତ)
୧୦. ମୋ ଜୀବନ କାହାଣୀ.... ହେଲେନ୍ କେଲେର୍(ଆମେରିକା)

### *ବିଜ୍ଞାନ ସନ୍ଦେଶ*

୧୧. ପ୍ରକୃତି, ବିଜ୍ଞାନ ଓ ସମାଜ (ବିଶ୍ୱ ଏକ କୁଟୁମ୍ବ)
୧୨. ସଭିଏଁ ଜିଇଁବା (ପ୍ରକୃତି ଅଧ୍ୟୟନ କାହାଣୀ)
୧୩. ଏକ ଉଜ୍ଜ୍ୱଳ ସକାଳରେ ଅକାଳ ସନ୍ଧ୍ୟା(ସୂର୍ଯ୍ୟପରାଗ)
୧୪. ଏକ ଅସରା ଯାତ୍ରାର କାହାଣୀ(ମଣିଷର କ୍ରମ ବିବର୍ତ୍ତନ)
୧୫. ମୁଖିଆଙ୍କୁ ଚିଠିଟିଏ (ପରିବେଶର ଡୋରି)
୧୬. ମୋ ବନ୍ଧୁ-ଲିକି... ହାଲଡେନ୍ (ବିଜ୍ଞାନ କାହାଣୀ) (ଯନ୍ତ୍ରସ୍ଥ)
୧୭. ନିଆଁପେଡ଼ି କୁହୁକ
୧୮. ଅଙ୍କ ଯାଦୁକର.... ବେରେମିଜ୍
୧୯. ବୈଦିକ ଗଣିତ
୨୦. ମଜା ଗଣିତ

### *ଶିଶୁ ସାହିତ୍ୟ*

୨୧. ଇଶପ କାହାଣୀ*(ଯନ୍ତ୍ରସ୍ଥ)*
୨୨. ସତ୍ୟବୀର ହରିଶ୍ଚନ୍ଦ୍ର....ଗିଜୁଭାଇ
୨୩. ବିଲେଇଙ୍କ ଶୋଭାଯାତ୍ରା(ଏକ ସଚିତ୍ର ଶିଶୁ କାହାଣୀ)
୨୪. ଗୀତ ବଗିଚା
୨୫. ଗଛ ବିଚିତ୍ରା